ବନବାସିନୀ

ବାବାଜୀ ଦାଢ଼ୀ

୧୯୬୬

ମା,

ବାଲ୍ମୀକି, କାଳିଦାସ, ତୁଳସୀ, ~~ଉପେନ୍ଦ୍ରଭଞ୍ଜ ତୋର ଚରିତ୍ର~~ ଚରିତ୍ର ଚିତ୍ରଣ କରି ଆଜି ହୋଇଛନ୍ତି ଅମର, ମହାକବି । ମୋର ତୁଳିରେ ଅବଶ୍ୟ ତୋର ଚରିତ୍ର ସେମିତି ଫୁଟି ଉଠିବ ନାହିଁ । ତଥାପି ତୋ ଚରିତ୍ର ପ୍ରଭାବରେ ତ ମୋର ଲେଖନୀ ନିଶ୍ଚେ ହେବ ଆଉ ଟିକିଏ ଟାଣୁଆ ।

ପୁଣି ବଡ଼ ପୁଅଙ୍କର ଘରକରଣା କଥାକୁ ମା ଯେତେ କାନରେ ନ ପକାଏ, ସବା ସାନ ପୁଅଟିର ଦୋଭୁଣ୍ଡିଆ କଥାକୁ ତାଠାରୁ ବହୁତ ଆଦରରେ କାନେଇ ଶୁଣେ । ସେଇମିତି ସାନ—ମୂର୍ଖ ପୁଅଟାଏ ମୁଁ ତୋର । ଏଣୁ ଭୁଲ୍ ଭଲ କରି ଯାହା ବିକଲମ ଗାରେଇଛି ତୋ କଥା, ତୁ ସେଥିରେ ଖୁସିହେବୁ ନିଶ୍ଚୟ । ଏଇ ଆଶାରେ ଏ **"ବନବାସିନୀ"** ତୋର ପାଦତଳେ ଥୋଇଛି ମୁଁ ।

ଯୁଗର କବି, ପଣ୍ଡିତ ମୋତେ ଲେଖକ ନ କହନ୍ତୁ କିନ୍ତୁ ତୋର କଥାକୁ ମୁଁ ନାଟକରେ ରୂପ ଦେଇ ଆଜି ପାଉଛି ବଡ଼ ଆନନ୍ଦ—ଆଉ ମୋର ଏତିକି ଅଳି ମା—ଯେମିତି ଶେଷ ଜୀବନ ପର୍ଯ୍ୟନ୍ତ ତୋ ଗୁଣ ଗାଇ ଦିନଗୁଡ଼ା କଟିଯାଉ ।

ତୋର

**ବାବାଜୀ**

# ଅଭିମତ

ସାହିତ୍ୟର ଯେତେଗୁଡ଼ିଏ ବିଭାଗ ରହିଛି ତନ୍ମଧ୍ୟରେ ନାଟକ ରଚନା କରିବା ଅଙ୍ଗିକ ଦୃଷ୍ଟିରୁ ଆୟାସସାଧ୍ୟ, କାରଣ ନାଟ୍ୟକାରଙ୍କୁ ଏକ ସୀମିତ ପରିବେଶ ମଧ୍ୟରେ ଗତି କରିବାକୁ ହୋଇଥାଏ । ଔପନ୍ୟାସିକର କାହାଣୀବିବୃତ୍ତି, ଦ୍ୱନ୍ଦ୍ୱ ଓ ଚରିତ୍ର ପରିକଳ୍ପନା ତଥା ତା'ର ବିକାଶ ବିଗରେ ଯେଉଁ ସ୍ୱାତନ୍ତ୍ର୍ୟ ଥାଏ, ନାଟ୍ୟକାର ସେ ସୁବିଧାରୁ ବଂଚିତ । ସେଥିପାଇଁ କାହାଣୀ ବିବୃତ୍ତି କାଳରେ ନାଟ୍ୟକାରଙ୍କୁ ବସ୍ତୁ – ସଂକ୍ଷେପ ପ୍ରତି ବିଶେଷ ଦୃଷ୍ଟି ଦେବାକୁ ହୋଇଥାଏ । ପୁଣି ନାଟକର ଏକ ନିର୍ଦ୍ଦିଷ୍ଟ ନାଟକୀୟ ପରିଣତି ପାଇଁ ନାଟ୍ୟକାରଙ୍କୁ ଆବଶ୍ୟକୀୟ ଘଟଣା, ଚରିତ୍ର ଗ୍ରହଣ କରିବାକୁ ହୋଇଥାଏ । ନାଟକର ସଫଳତା ରଙ୍ଗମଞ୍ଚରେ । ରଙ୍ଗମଞ୍ଚର ଅଭିନୟ କାଳ ସହିତ ସାମଞ୍ଜସ୍ୟ ରଖି ନାଟ୍ୟକାରଙ୍କୁ ନାଟକଟିର ବାସ୍ତବକାଳ ସୂଚିତ କରିବାକୁ ହେବ । ପୁଣି ନାଟ୍ୟକାର, ଅଭିନେତା ଓ ରଙ୍ଗାଧ୍ୟକ୍ଷ ( Stage Manager ), ଉପରେ ନାଟକର ପୂର୍ଣ୍ଣାଙ୍ଗ ସଫଳତା ନିର୍ଭର କରୁଥିବାରୁ ନାଟକକୁ ଏକ Composite Art କୁହାଯାଏ । ଏହାଛଡ଼ା ନାଟକଟିକୁ ସରସ ସୁନ୍ଦର କରିବାପାଇଁ ସାଦୃଶ୍ୟ ( Parallalism ), ବୈସାଦୃଶ୍ୟ (Contrast), ବକ୍ରୋକ୍ତି (Dramatic Irony), ପ୍ରଚ୍ଛନ୍ନତା ଓ ବିସ୍ମୟ (Dramatic Surprise and Concealment) ଅତିପ୍ରାକୃତ ଉପାଦାନ (Supernatural Element), ସଂଗୀତ, ନୃତ୍ୟ, ହାସ୍ୟ ପ୍ରଭୃତି ଅନେକଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ଉପକରଣର ଆବଶ୍ୟକତା ରହିଛି ।

ନାଟକ ରଚନା ଆୟାସସାଧ ହୋଇଥିବାରୁ ଆଂଶିକ (Technique) ଦିଗରୁ ଏକ ପୂର୍ଣ୍ଣ ନିର୍ଦ୍ଦୋଷ ନାଟକ ରଚନା କେବେ ସମ୍ଭବ ନୁହେଁ । ସାହିତ୍ୟିକ ଶିଳ୍ପ ଯେତେ ଉଚ୍ଚକୋଟୀର ହେଲେ ମଧ୍ୟ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ନୁହେଁ ।

ନାଟକର ରଚନା କ୍ଷେତ୍ରରେ ଶ୍ରୀଯୁକ୍ତ ବାବାଜୀ ପାତ୍ରୀଙ୍କର ଏହି ନାଟକଟିକୁ ତାଙ୍କର ପ୍ରାରମ୍ଭିକ ପ୍ରଚେଷ୍ଟା କହିଲେ ଚଳେ ଅବଶ୍ୟ ଏହା ପୂର୍ବରୁ ସେ ପରୀକ୍ଷାମୂଳକ ଭାବରେ ଦୁଇଖଣ୍ଡ ନାଟକ ରଚନା କରି ସ୍ଥାନୀୟ ରଙ୍ଗମଞ୍ଚରେ ଅଭିନୀତ କରାଇଥିଲେ । **'ବନବାସିନୀ'** ନାଟକଟି ରଙ୍ଗମଞ୍ଚରେ ଅଭିନୀତ ହୋଇ ସାଫଲ୍ୟ ମଣ୍ଡିତ ହୋଇଥିଲା । ଶଂସିତ ନାଟକଟିର କଥାବସ୍ତୁ ରାମାୟଣରୁ ଗ୍ରହଣ କରାଯାଇଥିଲେ ମଧ୍ୟ, ପ୍ରସଙ୍ଗକ୍ରମେ ଆବଶ୍ୟକୀୟ ଅତିପ୍ରାକୃତ ଉପାଦାନ ନାଟକମଧ୍ୟକୁ ଗୃହୀତ ଆଣିଥିଲେ ମଧ୍ୟ ଆଧୁନିକ ଦର୍ଶକ ଓ ପାଠକମାନଙ୍କ ପ୍ରତି ତା'ର ଯେ ଆବେଦନର ଅଭାବ ରହିଛି ତାହା କହିଲେ ଭୁଲ ହେବ । ରାମାୟଣର ସୀତା ଓ ରାମଚନ୍ଦ୍ରଙ୍କର ଚରିତ୍ର ସବୁଦିନେ ଭାରତୀୟ ପାଠକମାନଙ୍କ ନିକଟରେ ନୂତନ କାରଣ ସେଇ ଚରିତ୍ରର ପରିକଳ୍ପନା ମୂଳରେ ରହିଛି ଏକ ଉତ୍ତୁଙ୍ଗ ଆଦର୍ଶ ବ୍ୟଞ୍ଜିତ—ସାର୍ବଜନୀନତାର ଆବେଦନ । ନାଟ୍ୟକାର ସେଇ ସୀତା ଓ ରାମଚନ୍ଦ୍ରଙ୍କର ଚରିତ୍ରକୁ ନାଟକରେ ସ୍ଥାନ ଦେଇ ନିଜର ନୈତିକତା ଆଦର୍ଶବୋଧର ପରିଚୟ ଦେବାକୁ ସଫଳ ପ୍ରୟାସ କରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଆଙ୍ଗିକ ଓ ଶିଳ୍ପଗତ ଦୃଷ୍ଟିରୁ ସାମାନ୍ୟ ତ୍ରୁଟି ସତ୍ତ୍ୱେ ନାଟକଟି ଯେ ରଙ୍ଗମଞ୍ଚରେ ଉପଯୋଗୀ ହୋଇ ପାରିବ ଏ ବିଶ୍ୱାସ ମୋର ରହିଛି । [redacted], ବାର୍ଦ୍ଧକ୍ୟ ପ୍ରଭୃତି ନାନା ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଶ୍ରୀଯୁକ୍ତ

ପାଢ଼ୀକୁ ଲେଖଣୀ ଧାରଣ କରିବାକୁ ହୋଇଛି, ତଥାପି ସୃଷ୍ଟି କରିବାର ସ୍ପୃହା ତାଙ୍କର ମଉଳି ଯାଇନି । ପୂର୍ବରୁ ଅନେକଗୁଡ଼ିଏ ରଚନା ତାଙ୍କର ପାଣ୍ଡୁଲେଖ୍ୟ ଅବସ୍ଥାରେ ରହିଛି, ଅଳ୍ପ କେତେ-ଖଣ୍ଡି ପ୍ରକାଶିତ ହୋଇଛି, ସହୃଦୟ ସାହିତ୍ୟସେବୀ ଓ ବଦାନ୍ୟ ବ୍ୟକ୍ତିଙ୍କର ସହାନୁଭୂତିହିଁ ତାଙ୍କ ପକ୍ଷରେ ଏକମାତ୍ର ସାନ୍ତ୍ୱନା ।

**ଗଙ୍ଗାଧର ବଳ**
ଅଧ୍ୟାପକ
୧୨-୭-୫୮

'ବନବାସିନୀ'ର ଲେଖକ ଶ୍ରୀ ବାବାଜୀ ପାତ୍ରୀ ଏଥିରେ ନାଟକୀୟ ଖଣ୍ଡରେ ଜନ ସମାଜ ପାଇଁ ଯେଉଁ ସତ୍ୟର ପରିବେଷଣ କରିଛନ୍ତି, ତାହା ତତ୍ତ୍ୱଦର୍ଶୀ ମାତ୍ରେ ଉପଲବ୍ଧୀ କରିବେ ।

ସାର ଅସାର, ଗୁଣ ଅଗୁଣ ଓ ଭାବ ଅଭାବ ହିଁ ସୃଷ୍ଟିର ଉପାଦାନ । କିନ୍ତୁ ଅସାର ଭିତରେ ସାର, ଅଗୁଣ ଭିତରେ ଗୁଣ ଓ ଅଭାବ ଭିତରେ ଭାବ ଅନୁଭବ କରିବାହିଁ ଗୁଣୀ ଭାବୁକର ସ୍ୱଭାବ ।

ଶ୍ରୀରାମ ଗୃହିଣୀ ଜାନକୀଙ୍କ ଜୀବନରେ ଯେଉଁ ଚରିତ୍ରଗତ ଆଦର୍ଶର ବୈଶିଷ୍ଟ୍ୟ ପ୍ରକାଶ ପାଇଛି, ତାହା ଯଥାର୍ଥ ସତ୍ୟକୁ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର କରି ବାଢ଼ିଛି । ସେ ଜଗତ୍ ଜନନୀ, ସତୀ ଶିରୋମଣି ।

ଏପରି ବିଚିତ୍ର ସୃଷ୍ଟି, ସାମାଜିକ ଜୀବନ ଭିତରେ ଏକ ନିଷ୍ଠ, ସତ୍ୟର ଉପାସକ ହେବା ଲାଗି ଲେଖକଙ୍କର ଚରମ ଇଙ୍ଗିତ "ବନବାସିନୀ" ଭିତରେ ସାଇତା ରହିଛି । ବର୍ତ୍ତମାନ ଯୁଗରେ ତା'ର ଉପଯୋଗିତା ପ୍ରତ୍ୟେକ ସ୍ୱୀକାର କରିବେ । ସୁତରାଂ ଏହାର ବହୁଳ ପ୍ରସାରଣ ପାଇଁ ମୁଁ 'ସତ୍ୟ ସ୍ୱରୂପ'ଙ୍କ ନିକଟରେ ନିୟତ ପ୍ରାର୍ଥନା କରେ । ଇତି

ଆନନ୍ଦପୁର
ତା ୨୮ । ୧୧ । ୭୭

ଶ୍ରୀ ଗୋପାଳ ଚରଣ ଦାସ
ଭକ୍ତିଭୂଷଣ
ଭକ୍ତିନିକେତନ

କେତେ କେତେ ସ୍କୁଲର ପୁଅଝିଅଙ୍କୁ ଆଏ, ଝିଅ ଙ୍କୁ ଆଏ 'ବନବାସିନୀ'ର ଖେଳ ଦେଖାଇ ଟିକଏ ଟିକଏ ଘୁମିହେଉଚନ୍ତି। ଏ ମୋର ବଡ଼ ଆନନ୍ଦ ବଡ ଭାଗ୍ୟ। ଏ ପିଲାଙ୍କ ଖେଳରେ ଅନେକ ଶିକ୍ଷକ ଭାଇ, ଶିକ୍ଷାନୁଷ୍ଠାନର ଉଚ୍ଚ କର୍ମକର୍ତ୍ତାଙ୍କର ଅଚ୍ଛି ପ୍ରେରଣା— ଉତ୍ସାହ। ଏଇ ସବୁ ଯୋଗୁ ବନବାସିନୀ ପୁଣିଥରେ ଜନ୍ମନେଉଛି।

ଏଇଭଳି ସଭିଙ୍କର ସ୍ନେହ, ଶ୍ରଦ୍ଧା ଥାଉ।

ଗାଁ ଗହଳର ଯେଉଁ ସ୍ନେହର ସ୍କୁଲ ପିଲାଏ, ଶିକ୍ଷକ ଭାଇ ତଥା ମୋର ଚହ୍ନା ଜଣା କି ଅଚହ୍ନା ଅଜଣା ବନ୍ଧୁଏ 'ବନବାସିନୀ'କୁ ଏ ସ୍ନେହ ଶରଧା ଦେଖାଇଚନ୍ତି ଓ ଦେଖାଇବେ, ଲେଖକ ସେମାନଙ୍କ ଠାରେ ଋଣୀ।

## ନାଟକର ଚରିତ୍ର

| ପୁରୁଷ | ସ୍ତ୍ରୀ |
|---|---|
| ଶ୍ରୀରାମ | ସୀତା |
| ଲକ୍ଷ୍ମଣ | ଉର୍ମିଳା |
| ଲବ | କୌଶଲ୍ୟା |
| କୁଶ | ସୁମିତ୍ରା |
| ଦୁର୍ମୁଖ | ପାର୍ବତୀ |
| ଦେବରକ୍ଷୀ | ବାସନ୍ତୀ—ଜନୈକାଋଷିନନ୍ଦିନୀ |
| ଭରତ, | ଧୋବଣୀ |
| ଶତ୍ରୁଘ୍ନ | ବ୍ୟାଧପତ୍ନୀ |
| ଇନ୍ଦ୍ର, ଯମ, ଶବର | ବୁଢ଼ୀ |
| ଖଳପ୍ରଜା, ବଣୁଆ ଲୋକ | |
| ଶିବ, ବାଲ୍ମୀକ, ବଶିଷ୍ଠ, | |
| ମନ୍ତ୍ରୀ ଧୋବା, ବୁଢ଼ା। | |

# ବନବାସିନୀ

ପୁରୁଣା ଯୁଗର କଥା:—

ପୁରୁଣା ଯୁଗର କଥା ଗୋ, ଶୁଣ ଲବଙ୍ଗଲତା,
ସତୀପଣେ ସୀତା,　　　　ଜଗତ ପୂଜିତା,
ହୋଇଲେ ଜଗତ ମାତା ଗୋ । ଶୁଣ ଲବଙ୍ଗଲତା (ଘୋଷା)

ଜନକ ରାଜକୁଆଁରୀ ଗୋ, ଶୁଣ ଲବଙ୍ଗଲତା,
ଶିବଧନୁ ଭଙ୍ଗେ,　　　　ବୀରବର ରାମ
ବରରୂପେ ନେଲେ ବରି ଗୋ । ଶୁଣ ଲବଙ୍ଗଲତା ।

ପତି ପଦେ କରି ପ୍ରୀତି ଗୋ । ଶୁଣ ଲବଙ୍ଗଲତା,
ରାଜରାଣୀ, ବନ-　　　　ଚାରିଣୀ ବେଶରେ
ରଖିଲେ ମହତ କୀର୍ତ୍ତି ଗୋ । ଶୁଣ ଲବଙ୍ଗଲତା ।

ସୁନାଫୁଲ,ରୂପ ଶୁଣିଁଗୋ ଶୁଣ ଲବଙ୍ଗଲତା;
ସୁନାପୁର ଲଙ୍କା　　　　ରାଜା ଚୋରି କରି
ସବଂଶେ ମରିଲ ଶୋଇ ଗୋ । ଶୁଣ ଲବଙ୍ଗଲତା ।

ନିଆଁରେ ପରଖ ଦେଇ ଗୋ, ଶୁଣ ଲବଙ୍ଗଲତା,
ଖାଣ୍ଟି ସୁନା କଷି　　　　ଝଟକି ଉଠିଲେ,
ଦେଖିଲେ ରାଘବ ସାଇଁ ଗୋ । ଶୁଣ ଲବଙ୍ଗଲତା ।

ଖଳ ପରଜାଙ୍କ ପାଇଁ ଗୋ, ଗୃହୁ ଲବଙ୍ଗଲତା,
ସ୍ୱାମୀ ପାଶୁ, ଆସୁ ଅନ୍ତର ହୋଇଲେ
ବନରେ ରହିଲେ ଯାଇଁ ଗୋ । ଗୃହୁ ଲବଙ୍ଗଲତା ।
କାନ୍ତ ହିତ କରି ବ୍ରତ ଗୋ, ଗୃହୁ ଲବଙ୍ଗଲତା,
ବିଚ୍ଛେଦ ବିପତ୍ତି ଆଦରେ ସହିଲେ
ନୁଆଇଁ ସରଳ ମଥା । ଗୃହୁ ଲବଙ୍ଗଲତା ।
ଅଯୋଧ୍ୟା ରାଇଜ ଶିରୀ ଗୋ, ଗୃହୁ ଲବଙ୍ଗଲତା,
ସରିଲା ସକଳେ ଝୁରିଲେ, କହିଲେ
ଆସନ୍ତୁ ବନରୁ ଫେରି ଗୋ । ଗୃହୁ ଲବଙ୍ଗଲତା ।
ତଥାପି କୁଜନ କେହି ଗୋ, ଗୃହୁ ଲବଙ୍ଗଲତା,
ଫେରନ୍ତା କାଳକୁ ପରଖ ମାଗନ୍ତେ
ଅପମାନେ ହୋଇ ଦହି ଗୋ । ଗୃହୁ ଲବଙ୍ଗଲତା ।
"ରଖ ମୋତେ ବସୁମାତା" ଗୋ ଗୃହୁ ଲବଙ୍ଗଲତା,
ଡ଼ାକ ଦେଇ ସତୀ ମାତାକୋଳେ ଗଲେ
ଭୁଲି ଦୁନିଆଁର ଚିନ୍ତା ଗୋ । ଗୃହୁ ଲବଙ୍ଗଲତା ।
ପରଜା ବଗୃର ଏଇ ଗୋ ଗୃହୁ ଲବଙ୍ଗଲତା,
ସୁଖ ଶାନ୍ତି କାହିଁ ହୋଇବ ପ୍ରାପତ
ଖୋଜୁଛନ୍ତି ମିଛେ ଧାଇଁ ଗୋ । ଗୃହୁ ଲବଙ୍ଗଲତା ।
ଦେଶ ଗଢ଼ିବାର ମୂଳଗୋ, ଗୃହୁ ଲବଙ୍ଗଲତା,
ନାରୀ ଜାତି ଶିକ୍ଷା ନାରୀର ଧରମ
ନାରୀର ଚରିତ୍ର ବଳ ଗୋ । ଗୃହୁ ଲବଙ୍ଗଲତା ।
ଜାତିର ଜୀବନ ତୋଳ ଗୋ, ଗୃହୁ ଲବଙ୍ଗଲତା,
ସୀତାଦେବୀଙ୍କର ମହତ-ଆଦର୍ଶେ
ହୋଇବ ଦେଶେ ମଙ୍ଗଳ ଗୋ । ଗୃହୁ ଲବଙ୍ଗଲତା ।

# ପ୍ରସ୍ତାବନା ଦୃଶ୍ୟ

## (ବନ୍ଦନା)

ମାଟି ଉପରକୁ ଫୁଟି ଉଠିଚନ୍ତି ଧରାରାଣୀ । କୋଳରେ ତାଙ୍କର ସୀତାଠାକୁରାଣୀ । ଶ୍ରୀରାମଚନ୍ଦ୍ର ଟାଣୁଚନ୍ତି ସହଧର୍ମିଣୀଙ୍କର ଗୋଟିଏ ହାତକୁ-ଲକ୍ଷ୍ମଣ ତଳ ପଡିଛନ୍ତି ଭୂଇଁରେ-ଭରତ, ଶତ୍ରୁଘ୍ନ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଛନ୍ତି ଏକ ପାଖରେ—ଅନ୍ୟ ପାଛରେ ଲବକୁଶ ଦୁଇଭାଇ କାନ୍ଦୁଛନ୍ତି । କବି ବାଲ୍ମୀକି ମୁନି, ଚାହିଁଛନ୍ତି ହତାଶ ଭାବରେ । ଏଇ ଛବିରେ ସୀତାଙ୍କର ବନ୍ଦନା ଗାଉଛନ୍ତି କୁମାରୀ କେଇଜଣ ।

ବସୁମା:ତସୁତା, ନମୋ ନମୋ ସୀତା
ତବ ନାମେ ପୂତା ମୋ ଜନମଭୂଇଁ,
କେଉଁ କୋଟି ତୀର୍ଥ, ପବିତ ସେ କ୍ଷେତ୍ର,
ତବ ପଦଧୂଳି ପଡିବା ପାଇଁ ।
ତୁମରି ନୟନ-ବାରି ସାଗର ସରି
ବଢ଼ବା ଅନଳ ବକ୍ଷେ ଦେଲଟି ଜାଳି;
ହେମ-ରମ୍ୟ ଲଙ୍କା, ପୁରାଣେ ଗୋ ଲେଖା,
ବାଜେ ଜୟ-ଢକ୍କା ଗଗନ ଛୁଇଁ ।
ଚନ୍ଦ୍ର ଚନ୍ଦନ ବନ ହେଲା ଶୀତଳ
ତବ ଦେହେ ଲାଗି ମା ବହ୍ନି ପ୍ରବଳ;
ତବ ଡାକ ଶୁଣି, ଦେଇଚ ମା ଟାଣି,
କୋଳେ ଧରାରାଣୀ କମ୍ପିତା ହୋଇ ।
ଖଳ ବଳ ନନ୍ଦା ସଦର୍ପେ ଦଳି
ମହାମାୟୀ ରୂପେ ଉଠିଚ ଝଳି;

ଲଭନ୍ତୁ ମୁକତ ତବ ନାମ ସତୀ
ନିକାଳ ସନ୍ଧ୍ୟାରେ ହିନ୍ଦୁ ଜଗତ ଗାଇ ।
କ୍ଷମା-ସିନ୍ଧୁ ଚିତର କରୁଣା-ବିନ୍ଦୁ
ଉଜ୍ଜ୍ୱଳ ହାସ ମୁଖେ କଲ୍ୟାଣ ଇନ୍ଦୁ ;
ପୁରପଲ୍ଲୀ ସଦନ, ହୁଅ ମା ପ୍ରକାଶିତ
ଜାତମାତା, ଭଗିନୀ, ନନ୍ଦନୀ ହୋଇ ।

# ପ୍ରଥମ ଅଙ୍କ

## ( ୧ମ ଦୃଶ୍ୟ )

(ଉଦ୍ୟାନରେ ଅଯୋଧ୍ୟାର ରାଜ ଦମ୍ପତି)

ସୀତା—ଦେଖୁଛନ୍ତି, ଏଇ ମଲ୍ଲୀ ମନ୍ଦାର ସବୁ ନୂଆ ଲଗାଇ ଥିଲି ଯେ, ନୂଆ ଫୁଲ ଦେଇଚ ଆଜି ।

ରାମ—ହଁ ତୋଳିଚ—ମୋରି ପାଇଁ—ଉଆସ ଠାକୁରାଣୀଙ୍କି ଆଗ ଲଗି କରି ଥାଆନ୍ତି—

ସୀତା—ଉଆସ ଠାକୁରେ ଆଉ ସବୁ ଗଛରୁ କେତେ ଫୁଲ ଲଗି ହେଉଛନ୍ତି, ଆଉ ଏଇ କେତୋଟି ଗଛ ନିଜେ ଲଗାଇଛି ମୁଁ ଓମା ଠାକୁର ପାଇଁ ।

ରାମ—ଆଚ୍ଛା ଠାକୁରଙ୍କୁ ତ ନିତି ଫୁଲ ଲଗି କରୁଚ, ବର କଣ ମାଗୁଚ ?

ସୀତା—ବର ? ଠାକୁର ମନକଥା ବୁଝୁ ନ ଥିବେ କି ?

ରାମ—ଖୋଲି ନ କହିଲେ—

ସୀତା—ମ, କାଠ, ପଥର ଠାକୁର ତ—ମନକଥା ବୁଝନ୍ତି ଫୁସୁର ଫୁସୁର କହିଲେ—ଆଉ ମଣିଷ ଠାକୁର, ଯେ ନିତ ନିତ ଦାସୀର ସେବା ନେଉଥାନ୍ତି, ତାଙ୍କୁ କଣ ପୂଜାରିଣୀର ମନ ଅଛପା ?

ରାମ—ଖାଲି ନ ହେଲେ କ, ରତ୍ନଗର୍ଭା ଧରଣୀର କନ୍ୟା ତମେ ! ଗୃହସ୍ଥ ସମ୍ପତ୍ତିତକ ଯେଇଠୁ ଯାଇଛ ସବୁ—

ସୀତା - (ହସି) ତମର ବିଭୂତି ସବୁ ଯଜ୍ଞକୁଣ୍ଡରୁ ଆସିଛି ଯେମିତ ନା—

ରାମ—ହେଲେ, ସତୀ, (ହାତ ଧରିଲେ) ତମ ଠାକୁର ବଡ ନିଷ୍ଠୁର

ସୀତା – କିଏ କହେ ?

ରାମ—ଏଇ ଲଙ୍କାରୁ ଫେରିବା ପରେ ଯେ ଅଗ୍ନି ପରୀକ୍ଷା –

ସୀତା—ଓହୋ ! ନିଷ୍ଠୁରତା ନୁହେଁ ଯେ, ନିଜର ଦାସୀକି—ସତୀ ଶିରୋମଣିର ଆସନ ଦେବାପାଇଁ ତାହା ଏକ କୌଶଳ ! ନଇଲେ ଠାକୁରଙ୍କୁ କି ଦାସୀର ଅନ୍ତର ଅଜଣା ? (ହାତଧରି ପକାଇବାର ଅଭିନୟ)

ରାମ - ଯାହା ହେଉ ! କିନ୍ତୁ ଲକ୍ଷ୍ମଣ ନ ଥିଲେ, କଥା ସରିଥାନ୍ତା — ଚିର ବନ୍ଦିନୀ ତ ହୋଇଥାନ୍ତ ତମେ, ଆଉ ରାମର ଦଶା ଯେ କଅଣ —

ସୀତା -ବାସ୍ତବିକ୍, ଚଉଦବର୍ଷକାଳ ଶୋଇ ନାହାନ୍ତି, ଖାଇ ନାହାନ୍ତି, ସ୍ତ୍ରୀର ମୁହଁ ଗୃହେଁ ନାହାନ୍ତି; କି ଉପାଦାନରେ ଗଢ଼ା ସେ !

ରାମ— ନଇଲେ ଇନ୍ଦ୍ରଜିତ ମରିଥାନ୍ତା ?

ସୀତା – କିନ୍ତୁ ମୁଁ ବଡ ଅପରାଧ କରିଛି ।

ରାମ—ଗୁଡ—ଯେତେ ହେଲେ ନାରୀ ଧୈର୍ଯ୍ୟ ତମର—ସ୍ୱାମୀ ଉପରେ ବିପଦ ଆଶଙ୍କା କରି ଯାହା କଷ୍ଟ କର ବସିଚ ।

ସୀତା—କିନ୍ତୁ ଶିବଧନୁ ଭଙ୍ଗ ଆଖିରେ ଦେଖି ସୁଦ୍ଧା "ମୁଁ ଯେ ଆପଣଙ୍କର ବାହୁ ବିକ୍ରମ ଉପରେ ବିଶ୍ୱାସ ରଖି ପାରିଲି ନାହିଁ ।" ତା ପରେ ରାକ୍ଷସର କୌଶଳ—ବୁଝି ପାରିଲି ନାହିଁ, ତାର ମାୟା କଣ୍ଠସ୍ୱର—ଲକ୍ଷ୍ମଣ ଲକ୍ଷ୍ମଣ ଡ଼ାକ ବାରି ପାରିଲି ନାହିଁ, କିନ୍ତୁ ଲକ୍ଷ୍ମଣ ସବୁ ଜାଣି ପାରିଥିଲେ । ମୁଁ ସହଧର୍ମିଣୀ ହେଲେ କଣ ହେବ—ବୁଝିଚ—ସେ ଆପଣଙ୍କୁ ଯେପରି ଚିହ୍ନି ପାରିଚନ୍ତି—ମୁଁ ବି ସେପରି ଚିହ୍ନି ନାହିଁ ।

ରାମ—ଆଚ୍ଛା, ସେଇ ବନ ଋଷିକୁମାରୀ ବାସନ୍ତୀ ତମର ମନେ ପଡେ ?

ସୀତା—ତାକୁ ଆଉ ଭୁଲିହେବ ? କେଡେ ହସକୁରୀ ସେ । କେତେ କରି ଅନୁରୋଧ କରିଥିଲା—ବେଳ ଦେଖି ଆଉ ଥରେ-ଅଧେ ବୁଲି ଆସିବାକୁ—

ରାମ—ଦେଖାଯାଏ, ଯେବେ ସୁଯୋଗ ଘଟେ !

(ନେପଥ୍ୟ) ସଙ୍ଗୀତ ଶୁଣାଗଲା—

ବିଦ୍ୟାବିଶାରଦା- ସାରଦା-ବିନୟୀ
ଧରାତନୟୀ ହେଲେ ତେତେ,
ବିତ୍ତମା ରକ୍ଷଣେ- ସୁଷମା-ଅସମା
ଉପମା ଅଙ୍ଗୀକାର କୃତେ,
ବାଳାରେ-ବିହ୍ୱଳା ହେଲେ ଭକ୍ତି ଯୁକ୍ତେ,
ବିନ୍ୟାସ କରନ୍ତି କବିଭ୍ଵ ଗ୍ରନ୍ଥରୀ
କବି ସମ୍ମତ ମତି ମତେ ।

( କବିସମ୍ରାଟ ଭଞ୍ଜ )

ରାମ – ଆଃ—ବନ୍ଦକର ଦେଲା—ସର୍ବାଙ୍ଗ ସୁନ୍ଦର ଗୀତଟିଏ ! କଣ୍ଠଟି ବ ମଧୁର ।

ସୀତା—ସର୍ବାଙ୍ଗ ସୁନ୍ଦର ? ଭାବ ମନକୁ ପାଉ ନାହିଁ ?

ରାମ—କବିର ଚନ୍ଦ୍ରାଧାରା ସୁରଧୁନୀ ପରି ଗତି କରିଛି, ଭାବ ଲହରୀ କବିର ମିଠା-କଣ୍ଠରେ ସୁଧା ଢାଳି ଦେଇଛି !

ସୀତା—ସ୍ୱର, ତାଳ ଛନ୍ଦ, ଭାଷା ସବୁ ଠିକ୍ ହୋଇପାରେ, କିନ୍ତୁ କବି କେବଳ କଳ୍ପନାର ଖେଳ ଖେଳିଛନ୍ତି – ବାସ୍ତବ ରାଜ୍ୟର ସୀମା ସେପରି—ଢେର ଦୂରରେ ।

ରାମ – ସରସ୍ୱତୀଙ୍କର ଅନୁରୋଧରେ, ଉପମାମାନଙ୍କୁ, ତମେ ତମ ରୂପ ଗୁଣ ପସରାର ପାଖେ ପାଖେ ସାଇତି ଦେଲ—

ସୀତା – ହଁ, ବୁଝୁଛି ମୁଁ – ଏହି ସୁବିଧାରେ କବି ତାଙ୍କ ବକ୍ତୃତା ଫୁଟାଇଲେ –

ରାମ – ଅବାସ୍ତବ କ-ଅ-ଣ ହେଲା—?

ସୀତା—ପ୍ରିୟାର ସ୍ତୁତି, ଅବଶ୍ୟ ରସିକ ଚୂଡ଼ାମଣିଙ୍କର କର୍ଣ୍ଣପ୍ରିୟ; କିନ୍ତୁ—

ରାମ – କିନ୍ତୁ ଆଉ କାହିଁ ଏଠି ? ଉପବନର ପଶୁପକ୍ଷୀ – ସଭିଙ୍କର ପ୍ରିୟ ଏ ସଙ୍ଗୀତ – ଲକ୍ଷ୍ୟ ଥିଲା ତମର ଏଇକ୍ଷଣି ଯେ ହରିଣ ଛୁଆ ଦୋ'ଟି ସେଇ ବୁଦା କାନ୍ଥିରେ କାନ ଡେରି ଶୁଣୁଥିଲେ ? ଆଉ ଏଇ ଯେ ଆମ୍ବଗଛରୁ କୋଇଲଟି ଉଡ଼ିଗଲା—କିମିତି କାନ ପାରିଥିଲା ସେତେବେଳେ ।

ସୀତା—ଏଇ ତ ପ୍ରମାଣ ହାତେ । ଏତେ ଆଉକୁ ତେବେ ନଜର ଥିଲା, ସଙ୍ଗୀତ ତମକୁ ତ ମଜାଇ ପାରିନାହିଁ ।

ରାମ—(ହସି) ଯେତିକି ଗାଇଛ ସେତିକି କାମ କରିଛି ।

ସୀତା—ତେବେ, ଚନ୍ଦ୍ରସୂତା ପୂର୍ବରୁ ଏମାନଙ୍କ ଉପରେ ଦୃଷ୍ଟି ପଡ଼ିଥିଲା, ନାଁ ? କିନ୍ତୁ, ମୁଁ ଜାଣେ, ସଙ୍ଗୀତ ଚମତ୍କତା ଆଉ କାହାର ସେତେ ପ୍ରିୟ ନୁହେଁ । ବିଶେଷତଃ, ରାଜ ଅନ୍ନରେ ପାଳିତ, ଭାଟ ମୁଖରେ ଏହା ଆଦୌ ସୁନ୍ଦର ନୁହେଁ ।

ରାମ—ତମେ କହୁଚ ପୂର୍ବ ରାଜାମାନଙ୍କର ଯଶକୀର୍ତ୍ତି ଗାନ ଏମାନଙ୍କର ଏକମାତ୍ର ଧର୍ମ - ଆଉ ବର୍ତ୍ତମାନର········

ସୀତା—ବର୍ତ୍ତମାନ ଅତୀତ ଭବିଷ୍ୟତ ଯେଉଁ ରାଜଦଣ୍ଡ ହୋଉନ୍ତୁ ସେମାନଙ୍କର ଗୁଣଗାନ, ସାଧାରଣ ପ୍ରଜା ମୁଖରେ ଯେପରି ସ୍ୱଭାବ-ସୁନ୍ଦର ହୋଇପାରେ —

ରାମ—ସତ, ହେଲେ କବି, ଭାଟ ପ୍ରଭୃତଙ୍କର ରାଷ୍ଟ୍ର ଗଠନରେ ବିଶେଷ ଦାୟିତ୍ୱ ଅଛି । ଅତୀତକୁ ଭୁଲିଯାଏ ମଣିଷ, ବର୍ତ୍ତମାନକୁ ମଧ୍ୟ ଜଗି ଚଳିପାରେନା । ଏଣୁ ଦେଶ ଆଉ ଜାତିର ପତନ ବେଳେ, ତାର ମହତ୍ତ୍ୱକୁ ଚେତାଇ ଦେବାର ଭଲ କାମ କରନ୍ତି ଏମାନେ ଦେଶ ଯେ ପର୍ଯ୍ୟନ୍ତ ଏଇ ଜାତିର ସମ୍ମାନ ପୂଜା କରି ଶିଖି ନାହିଁ, ତାର ଉନ୍ନତି ଅସମ୍ଭବ

ସୀତା —ଦେଶ ଆମର ପୁରାଣ ଶାସ୍ତ୍ରକୁ ମାନେ ଫୁଲ ଚନ୍ଦନ ଦିଏ — ଧୂପ, ଦୀପ ଦିଏ—ସେଇ ପୁରାଣର ଇନ୍ଦ୍ର, ବିଷ୍ଣୁ ପ୍ରଭୃତି ଦେବତାଙ୍କୁ ! କିନ୍ତୁ, ଭୁଲିଯାଏ,ଏଇ ପୁରାଣକାର, ଶାସ୍ତ୍ରକାର କବିଙ୍କୁ—

ରାମ—ହେଲେ. ସତୀ, କବି ଚାରଣର ଏସବୁ ଅମୃତ ସନ୍ତାନ । ଏମାନଙ୍କର ଲକ୍ଷ୍ୟ ସେଇ ଅମୃତତ୍ୱରେ ।

ସୀତା—ଏଇ ଯେ କୂଳର ଦେବତା ଗୁଡ଼ି ଯାଉଚନ୍ତି—ବାଦଲ-ଗୁଡ଼ିକ ଉପରେ ଅବୀର ବିଞ୍ଛି ବିଞ୍ଛି ।

ରାମ – ଚମତ୍କାର !
ସୀତା – ଠିକ୍, ଆପଣ ଯେମିତି ଲଙ୍କାକୁ ରକ୍ତରେ ଧୋଇ ଦେଇ ଫେରି ଆସିଲେ—

(ଦୁହେଁ ଅସ୍ତଗାମୀ ସୂର୍ଯ୍ୟଙ୍କୁ ଚାହିଁରହନ୍ତି)

—ପଞ୍ଚ ପତନ—

## ୨ୟ ଦୃଶ୍ୟ

(ଧୋବା ଆଉ ଧୋବଣୀ)

ପୁରୁଷ—ନାଇଁ ! ତୁ ଏ ଦୁଆରବନ୍ଧ ଡେଇଁ ପାରିବୁ ନାହିଁ !!
ସ୍ତ୍ରୀ—କଲେ ମା, ଘର ମୋର, ଦୁଆର ମୋର, ମୁଁ କାହିଁକି ଦୁଆରବନ୍ଧ ଡେଇଁ ପାରିବି ନାଇଁ ? କଉଦିନ ଏମିତି ଘଟଣା ହୋଇଛି ନ ?
ପୁରୁଷ – ନାଇଁ ତୁ ତ ବଡ ଘରଣୀ ଟାଆ···ଲକ୍ଷ୍ମୀଠାକୁରାଣୀ ଆମର ପଡ଼ ଦେବାକୁ ଦୁଆରେ ଦୁଆରେ ବୁଲୁଚନ୍ତି ଇ······ଇ···
ସ୍ତ୍ରୀ – କୁ ଦୁଆରେ ଯାଇଥିଲେରେ ଛତରି—ସତେ ଯେମିତି ରଜା ମାଇପ ରାଣୀପରି ରଖାଇଚ ମତେତ ! କରେ, ମୋ କଥାରେ ତୁ କଥା କହିବୁ ତୁ ଗୋଟେ ମୁଣ୍ଡ ? ତୁ ପୁଣି ମୋତେ କହିବୁ । ମୁଁ ଘର ଘର ବୁଲୁଚି ? ଘର ଘର ନ ବୁଲିବତ ତୋ ସୁନ୍ଦର ମୁହଁ ଦେଖି ଘରର ଝିଅ ବୋହୂ ତୋ ଆଗରେ ହୋଇ ଲୁଗାପଟା ପକାଇବେ ? ଗୁଣ୍ଡା ଚଳିବନା ? କରେ କଥା କଣ ? ସକାଳୁଠାରୁ ମୁଁ ବାପଘରୁ ଫେରୁଚି, ଦୁଆରମୁହଁ ଓଗାଳୁଚୁ ମତେ, ବାସି ମୁହଁରେ ପାଣି ପଡ଼

ନାଇଁ ! କଣ୍ଟାବଣରେ ଲୁଗା ପକାଇ କଳ କରୁଚୁ, ଏତେ ଯେବେ ଲାଜ, ପେଡରେ ବାନ୍ଧ ରଖୁନାଉଁ—ଲାଜ ନାଇଁନା ଲଜଉଚ, ଫଣ୍ଟା ବାଇଦକୁ ବଜଉଚ ।

ପୁରୁଷ – ମୁହଁ ଭୁରୁଡ଼ ମାରୁଚୁ ନା ? ହଂସପ ଘରଣୀଭୁ—ବାସିସୁଆ ହୋଇ ରହବୁ ବାପଘରେ ?

ସ୍ତ୍ରୀ – ଓହୋରେ, ରାମଚନ୍ଦ୍ର ଟବ ରଜା – ତାଙ୍କ ଇସ୍ତ୍ରୀ ଫେଣେ ସୀତା, ସିଏ ଫେଣେ ଜନକ ରଜା ଝିଅ—ଆମ ଅଯୋଧ୍ୟା ରାଇଜ ରାଣୀ—ରାବଣ ପରା ଅସୁର ରଜା, ଯା ମୁହଁ ଗୃହଁ ଯୋଗାଏ ନାହିଁ—ତା ଘରେ ବନ୍ଦୀ ହୋଇ ରହିଲେ ମାସ ମାସ ଧରି – ହଇରେ ପୋଡ଼ାମୁହାଁ କଣା ନା ଜନଜନାଙ୍କରେ ଭୁ । ରାଜା କଣ ତାକୁ ଘରୁ ବାହାର କରିଦେଲେ ?

ପୁରୁଷ—ମୁହଁ ହୁଉଚ ଫେର ବଣ୍ଟାଉ, ଜାଣିଚୁ ନା ମୁଁ କିଏ ? ସେ ସବୁ ରଜା ରାଜୁଡ଼ା ବଡ଼ଲୋକ ଘରଆ କଥା – ତାଙ୍କୁ ପୋଷାଏ ସବୁଏ, ଆମ ଭଳ ପାଟିକ ଜାତ ଘରେ ଚଳେନା ।

ସ୍ତ୍ରୀ—ହଉରେ ଖଣ୍ଡିଆ, ଦେଖି ? ଆ ନଶାପ କରିବା ପଧାନ ପାଖରେ (ଗୃଲଗଲା)

ପୁରୁଷ – ଗୃଲ ଛିଣ୍ଡାଳୀ, ଚତେ ଯେବେ ପିଚଳା କାଟି ଶୁଦ୍ଧ ନ ହେଉଚ – ତାହେଲେ ମୁଁ ଏ ରାଇଜକୁ ଅଯୋଗ୍ୟ (ଗୃଲଗଲା)

ଦୁର୍ମୁଖ—(କହ୍ବ କହ୍ବ ଆସିଲା) ଇଃ କେତେ ନୀଚ ! କେଡ଼େ ଗ୍ଲେଚ ଏମାନେ, ଭଗବାନ !! ନଆଁ ସୁଅ ଭିତରେ ପଶି ଆସିଲେ ଠାକୁରାଣୀ ; ସେଥିରେ ପୁଣି କଣ ନା, ସେ ସବୁ ରଜାରାଜୁଡ଼ା ବଡ଼ଲୋକଘରଆ କଥା – ତାଙ୍କୁ ପୋଷାଏ ଆଉ ଆମ ଭଳ ପାଟିକ ଜାତକ ପୋଷାଏ ନା—ଇଃ କ ସମ୍ବାଦ ଦେବ ମୁଁ ପ୍ରଭୁଙ୍କୁ !! (ମୁଣ୍ଡରେ ହାତମାରି ଗୃଲଗଲା)

## ( ଷଷ୍ଠ ଦୃଶ୍ୟ )

—କକ୍ଷ—

ଶ୍ରୀରାମ – ଶୀଘ୍ର ରଥ ପ୍ରସ୍ତୁତ କର ।

ଲକ୍ଷ୍ମଣ – କ୍ଷମା କରନ୍ତୁ, ଗୁରୁ ବଶିଷ୍ଠଙ୍କ ମତ ନ ନେଇ—

ଶ୍ରୀରାମ—ଜାଣେ, ଅଯୋଧ୍ୟାର ରାଜା ରାମଚନ୍ଦ୍ର ବିନା କେହି ଆଉ ସୀତାଙ୍କୁ ଆଜୀବନ ବାସଦେବାକୁ ରାଜିହେବେ ନାହିଁ – ଏକା ତମେ କାହିଁ – ଉଆସର ପଶୁପକ୍ଷୀ ପର୍ଯ୍ୟନ୍ତ ଏ ଆଦେଶର ପ୍ରତିବାଦ କରିବେ ।

ଲକ୍ଷ୍ମଣ – ଅଯୋଧ୍ୟାର ସିଂହାସନ ତାର ସନ୍ତୋଷଜନକ ଉତ୍ତର ଦେବନି ? ଗୋଟାଏ ନୀଚ ମୂର୍ଖର ଫୁଟାଣି ଶୁଣି—ଏତେ ଗୁଡ଼ାଏ ଲୋକର ବିଚାରକୁ ଆଘାତକରି ଆଡ଼େଇ ଦେବାରେ କଣ ଅଯୋଧ୍ୟାର ରାଜଧର୍ମ ପ୍ରତିପାଳନ ହେବ ?

ଶ୍ରୀରାମ—ଫୁଟାଣି ନୁହେଁ, ସନ୍ଦେହ ତାର, ମହାରାଣୀଙ୍କ ଚରିତ୍ରରେ !

ଲକ୍ଷ୍ମଣ—ଦେବୀଙ୍କର ଅଗ୍ନିପରୀକ୍ଷା ତେବେ ମିଛ ! ହାଃ । ହାଃ ! ବାଚାଳ ! କି ଚିହ୍ନ ଦେଇଛି ସେ – ଅଯୋଧ୍ୟାର ମହାରାଜ ସ୍ତ୍ରୈଣ, ସ୍ତ୍ରୀର ରୂପ ଉପାସକ ଦୋଷ ତାର ଦେଖି ଦେଖୁ ନାହାନ୍ତି । ଆଉ ମହାଦେବୀଙ୍କର ଚରିତ୍ର—ଇଃ ! ପବିତ୍ର ରଘୁକୁଳର ସମ୍ମାନ ଉପରେ ଅଯଥା ଆଘାତକାରୀକୁ ଶୀଘ୍ରମୃତ୍ୟୁ ଆଦେଶ ହେଲେ—ଏଇ ମୁହୂର୍ତ୍ତରେ, କି ପ୍ରକାର ଶାସ୍ତି—

ଶ୍ରୀରାମ – ଶାସ୍ତି ? ସେ ଯେ ପ୍ରଜା ! ରାଜା, ରାଣୀ ଓ ସିଂହାସନର ସମାଲୋଚନା କରିବାର ପୂର୍ଣ୍ଣ ଅଧିକାର ଅଛି ତାର !

ଲକ୍ଷ୍ମଣ – ବର୍ବର ପାଗଳର ପ୍ରଳାପ— ସମାଲୋଚନା ହୋଇପାରେନା ପ୍ରଜା ସେ ? ମାତା, ପୁରୋହିତ, ମନ୍ତ୍ରୀ ଗୁରୁଦେବ କ ପ୍ରଜା ନୁହନ୍ତି ? ଏମାନଙ୍କର ମତ ଗ୍ରହଣ କରାଯିବ ନାହିଁ କାହିଁକି ?

ଶ୍ରୀରାମ—ସେମାନେ ରାଜ ପୁରୋହିତ ରାଜଗୁରୁ ଓ ରାଜମାତା – ରାଜ ପକ୍ଷ ସମର୍ଥନ କରିବେ ନିଶ୍ଚୟ—ଆଉ ମହାମନ୍ତ୍ରୀ ମଧ୍ୟ ଅତ୍ୟଧିକ ରାଜଭକ୍ତ – ରଘୁବଂଶର ପବିତ୍ରତା – ଉଚ୍ଚ ଆଦର୍ଶପାଇଁ – ରଘୁବଂଶ ସନ୍ତାନର ବକ୍ଷର, ନିଶ୍ଚୟ ତାଙ୍କର ବକ୍ଷରଠାରୁ ଉପାଡ଼ି ହେବ ।

ଲକ୍ଷ୍ମଣ—କିନ୍ତୁ ମହାଦେବୀଙ୍କର ଅନୁପସ୍ଥିତିରେ – ଶାସନ ଦଣ୍ଡର ପରିଚାଳନାରେ—

ଶ୍ରୀରାମ – ମହାରାଜାଙ୍କର ଦୁର୍ବଳତା ଆସିପାରେ, ଏଇ ଆଶଙ୍କା ?

ଲକ୍ଷ୍ମଣ – ଅସମ୍ଭବ କି ? ମହାରାଜ କାଠ, ପଥର ନୁହନ୍ତି – ମଣିଷ ସେ ।

ଶ୍ରୀରାମ – ହେଲେ ଭବିଷ୍ୟତ ସେ—ବର୍ତ୍ତମାନ ପାଇଁ ଆଉ ଉପାୟ କିଛି ଦେଖୁ ନାହିଁ ।

ଲକ୍ଷ୍ମଣ—ମହାରାଣୀଙ୍କର ଗର୍ଭରେ ଯେ ବର୍ତ୍ତମାନ, ଅଯୋଧ୍ୟା ସିଂହାସନର ଉତ୍ତରାଧିକାରୀ !

ଶ୍ରୀରାମ—ସତୀ ଗର୍ଭର ବିପଦର ଆଶଙ୍କା ଅମୂଳ ।

ଲକ୍ଷ୍ମଣ—ଆଉ କି ବିପ୍ଳବ ଆସିପାରେ, ଲକ୍ଷ୍ମଣ ରାଜାର ଭାଇ, ମହାଦେବୀ ତ ରାଜରାଣୀ – ସେମାନେ ତ ନିଜ ପକ୍ଷ ନେଇ କହିବେ ।

ଶ୍ରୀରାମ – ଠିକ୍ ବୁଝିଚ—ତ୍ୟାଗହିଁ ଏକମାତ୍ର ପଥ—ଦରକାର ହେଲେ ପ୍ରାଣ ପର୍ଯ୍ୟନ୍ତ ପ୍ରଜା ପାଇଁ ଦେବାକୁ ହେବ ।

ଲକ୍ଷ୍ମଣ – ନିଯୁକ୍ତିର ଗତି – ଭବିଷ୍ୟତ ଜଣାଥିଲେ ଅଯୋଧ୍ୟା ଫେରି ନ ଥାନ୍ତା ଲକ୍ଷ୍ମଣ ।

ଶ୍ରୀରାମ – ପିଲା ତମେ, କ'ଣ କହୁଚ ? ଏକେ କନିଷ୍ଠ-ତାରି ପର ପ୍ରଜା ।

ଲକ୍ଷ୍ମଣ—ଆଦେଶ ଅବମାନନା ତ କେବେ କରି ନାହିଁ-କିନ୍ତୁ ଆଜି ଯେପରି ସବୁ ଗୋଳମାଳ ହୋଇ ଯାଉଚି—ଭାଇ ଭାଉଜ, ମହାରାଜ ଆଉ ମହାରାଣୀଙ୍କ ଭିତରେ ଲକ୍ଷ୍ମଣ ଯେ କାହାର, କିଛି ବୁଝି ହେଉନାହିଁ ।

ଶ୍ରୀରାମ—ବିପଦରେ ରାମ ତମକୁ କବଚ ବୋଲି ମନେକରେ, ଏତେ ବିଚଳିତ ହେଉଚ; ରାଜଧର୍ମ ପାଳନ ହେବ କିପରି ?

ଲକ୍ଷ୍ମଣ—କ୍ଷମା କରନ୍ତୁ—ପାରିବି ନାହିଁ । (ବାଷ୍ପ ଜଡ଼ିତ କଣ୍ଠରେ କହିଲେ)

ଶ୍ରୀରାମ—ବଂଶର ମର୍ଯ୍ୟଦା ରକ୍ଷାପାଇଁ ବ୍ରାହ୍ମଣ ଭୃଗୁପତି ବିରୁଦ୍ଧରେ ଅସ୍ତ୍ର ଧରିଛ ତମେ ।

ଲକ୍ଷ୍ମଣ – କିନ୍ତୁ ଆଜିର ପରିସ୍ଥିତିରେ ଲକ୍ଷ୍ମଣ ଯେପରି ପ୍ରଭୁ ମହାରାଜ ମହାଦେବୀଙ୍କୁ ବନବାସିନୀ ହେବାକୁ ଦେବା ପୂର୍ବରୁ, ଅନୁରୋଧ କରେ, ଲକ୍ଷ୍ମଣକୁ ସେହି ଶାସ୍ତି ଦିଆଯାଉ ।

ଶ୍ରୀରାମ—କର୍ତ୍ତବ୍ୟ ନିକଟରେ ଭାଇ-ବନ୍ଧୁ ମାୟା ମମତାର ବିଗ୍ରହ ରଘୁକୁଳ ଜାତକରେ ନାହିଁ ? ଏକି ଅନାର୍ଯ୍ୟ ସ୍ୱଜନ ମୋହ ଆଜି ତମର । କର୍ତ୍ତବ୍ୟପରାୟଣ ପ୍ରାତଃସ୍ମରଣୀୟ ହରିଶ୍ଚନ୍ଦ୍ର, ପୁଣ୍ୟଶ୍ଳୋକ ସ୍ୱର୍ଗୀୟ ମହାରାଜ ପିତୃଦେବ ଦଶରଥଙ୍କର ପ୍ରାଣସମ ପୁଅ ବୋଲି ଯାହାଙ୍କୁ ସ୍ୱଇଚ୍ଛା ବିରୁଦ୍ଧରେ ବନବାସ ଆଦେଶରେ ନିଜର ମୃତ୍ୟୁ ବରଣ କ'ଣ ମନେ ପଡ଼େ ନା

ତମର ଲକ୍ଷ୍ମଣ ? ଯାଅ, ଏଇ ମୁହୂର୍ତ୍ତରେ ଅଗ୍ରଜ ଆଉ ରାଜାର ଆଦେଶ ପାଳନ କର, ରାମଠାରେ ଆତ୍ମସମର୍ପଣ କରିଚ ପରା?

ଲକ୍ଷ୍ମଣ—ଯନ୍ତ୍ରପରି କାମ କରିଯିବା ବୋଧହୁଏ ଲକ୍ଷ୍ମଣର ଧର୍ମ-କିନ୍ତୁ କଣ କହି ମହାଦେବୀଙ୍କୁ ରଥରେ ବସେଇ କରାଇବାକୁ ହେବ ?

ଶ୍ରୀରାମ—କିଛି କହି ନାହିଁ—ବନପ୍ରିୟା ସେ ସବୁଦିନେ, ଋଷି କୁମାରୀମାନଙ୍କୁ ଦର୍ଶନ କରାଇବାକୁ ଚାହିଁଥିଲେ-ସେ ଇଚ୍ଛା ପୂରଣ ପାଇଁ କଥା ଦେଇଚି ମୁଁ—ବନ ବିହାର ପାଇଁ ମହାରାଜାଙ୍କର ଆଦେଶ ହୋଇଚି, କହି ନେଇଯିବ—ତାପରେ ବୁଦ୍ଧିମାନ ତମେ ସୁବିଧାରେ ସବୁ କାର୍ଯ୍ୟ କରାଇ ନେବ ।

ଲକ୍ଷ୍ମଣ—ବଂଶ ମର୍ଯ୍ୟାଦା ରକ୍ଷା ଉଦ୍ଦେଶ୍ୟ ? (ଦୀର୍ଘନିଃଶ୍ୱାସ) ଅଗ୍ରଜ, ରାଜାଦେଶରେ ରଘୁକୁଳ ବୀର ଲକ୍ଷ୍ମଣ ଆଜ ନିରପରାଧିନୀ, ନିରିହା, ଅନ୍ତଃସତ୍ତ୍ୱା ରାଜବଧୂଙ୍କୁ ପ୍ରତାରଣା କରିବାକୁ ଯିବ ! କିନ୍ତୁ ଉଦ୍ଦେଶ୍ୟ ସାଧିତ ହେବ ତ ? ମନେହୁଏ, ଯେପରି ଏହାଦ୍ୱାରା ରଘୁକୁଳର ମର୍ଯ୍ୟାଦା, ରାଜାଦେଶ ଆଉ ଲକ୍ଷ୍ମଣର ଚରିତ୍ର ଉପରେ କଳଙ୍କର ଛାଇ ଦୁଇଗୁଣା ମାଡ଼ିଯିବ ।

ଶ୍ରୀରାମ—ଆଦେଶ-ଆଦେଶ—ପୁଣି ବିଚାର କରିବାର ଅଧିକାର ଆଉ କାହିଁ ତମର ଲକ୍ଷ୍ମଣ ? ଏତେ ଦୂର ତଳକୁ ତମେ ଖସି ଯାଉଚ ?

ଲକ୍ଷ୍ମଣ—କ୍ଷମା କରନ୍ତୁ ଆର୍ଯ୍ୟ, ଲକ୍ଷ୍ମଣ ସେ ଆଜ ଲକ୍ଷ୍ମଣ ହୋଇ ନାହିଁ ।

ଶ୍ରୀରାମ—ଯାଅ ଶୀଘ୍ର !

ଲକ୍ଷ୍ମଣ—ହଁ ଯାଉଛ, ଯେତେ ଶୀଘ୍ର ପାରେ—ପ୍ରାଣବାୟୁଟା ଏହ୍ପର ଶୀଘ୍ର ଯାଆନ୍ତା· ଭଲ – (ଗୃହଗଲେ),

ଶ୍ରୀରାମ – ବିମାତା ସନ୍ତାନ ଏଇ ଲକ୍ଷ୍ମଣ – କୋମଳ ପ୍ରାଣ—ଭାତୃ-ପ୍ରେମର ଗୋଟିଏ ସରଳ ମନ୍ଦାକିନୀ ଧାରା—କେଡ଼େ ମହତ୍ । ଆଉ ରାଜା ବୋଲ ରାମଚନ୍ଦ୍ର—କ କୁଟୀଳ – କଠିନ, ସୀତାର ସ୍ୱାମୀ ବୋଲ କହିଲେ ବି, ବିବେକ ଅନୁମତ ଦିଏ ନା ଆଜ ।

—ପଟ୍ଟପତନ—

## ୪ର୍ଥ ଦୃଶ୍ୟ

(ଭାଗୀରଥି ତୀର ବନପଥ)

ସୀତା – କି ପ୍ରଶସ୍ତ, କି ଗମ୍ଭୀର ଏଇ ଭାଗୀରଥି – ଠିକ୍ ଯେପରି ତମର ଅଗ୍ରଜଙ୍କ ହୃଦୟ !

ଲକ୍ଷ୍ମଣ—(ଦୀର୍ଘନିଃଶ୍ୱାସ)-ହୁଁ

ସୀତା—ଦୂର ପର୍ବତର ନୀଳିମା ସଙ୍ଗେ ଖୋଲା ଆକାଶରେ କିସି କି ସୁନ୍ଦର ଦିଶୁଛି ଲକ୍ଷ୍ମଣ, ବେଳେ ବେଳେ କୋଶଳ ରାଜାଙ୍କ ପାଖରେ ଭରତଙ୍କର ଦେହଖଣ୍ଡିକ ଯେମିତ ଦିଶେ । ତମେ ଏତେ ଅନ୍ୟମନସ୍କ ହେଉଛ କାହିଁକି ? ମହାରାଜାଙ୍କଠାରୁ ଅନ୍ତର ହୋଇ ଆସିଛ ବୋଲ ଖରାପ ବୋଧ ହେଉଛ, ନା ? ମତେ ବି ଭଲ ବୋଧ ହେଉନାହିଁ—ଏଇ ଯେ ଡ଼ାହାଣ ପଟରେ ଶିଆଳଟାଏ ନା ? ଡ଼ାହାଣ ଆଖିବି ଫରକୁଛ

ମୋର—ଲକ୍ଷ୍ମଣ ତମେ କିଛି ଜବାବ ଦେଉନାହଁ କାହିଁକି ?
ଊର୍ମିଳା ପ୍ରଭୃତି ଭଲ ଅଛନ୍ତି ତ ?

ଲକ୍ଷ୍ମଣ—ଅଛନ୍ତି ।

ସୀତା—ଆଉ କ'ଣ ରାଜମାତାମାନଙ୍କର କାହାର କିଛି ଅସୁସ୍ଥ ?

ଲକ୍ଷ୍ମଣ—ନାହିଁ ମା (ଆଖି ଛଳ ଛଳ କଲେ)

ସୀତା—ତେବେ ତମେ ଏପରି ଆଖି ଛଳ ଛଳ କରୁଚ କାହିଁକି,
କହ, ମୋର ଯେ ଅଯଥା ନାନାପ୍ରକାର ସନ୍ଦେହ ଆସୁଚି ।

ଲକ୍ଷ୍ମଣ—ହୁଁ କହୁଚି ମା—କହିବାକୁ ଆସିଚି ମୁଁ, ଲକ୍ଷ୍ମଣ ଛଡ଼ା
ଅଯୋଧ୍ୟାରେ ଆଉ କିଏ ବା କାହିଁକି ?

ସୀତା—ଚୁପ୍ ହୋଇଗଲ ଯେ ପୁଣି—କ'ଣ କହୁନା କାହିଁକି ?
କ'ଣ ଏପରି କଥାଯେ ଏଠାକୁ କହିବାକୁ ଆସିଚ ?

ଲକ୍ଷ୍ମଣ—ମା (ହଠାତ୍ ମୁଣ୍ଡଟା ଘୂରାଇ ଦେଲାପରି ହେଲା ତାଙ୍କର ;
ପଡ଼ିଗଲା ପରି ହେଲେ ସେ)

ସୀତା—(ଧରିନେଇ) ଏ କଣ ଲକ୍ଷ୍ମଣ—କଣ ହୋଇଚି ତମର-
ଏପରି ତୁମେ ବା କାହିଁକି ହେଉଚ ?

ଲକ୍ଷ୍ମଣ—ଛୁଅଁ ନା-ଛୁଅଁ ନା-ମା ମତେ ! ଚଣ୍ଡାଳଟାଏ ମୁଁ-ଚଣ୍ଡାଳ-
ଟାଏ ରାଜପୁରୁଷ—ରାଜାର ଆଜ୍ଞାକାରୀ ! ସତୀ, ସ୍ୱାଧ୍ୱୀ,
ପତିବ୍ରତା, କୋମଳହୃଦୟା-କୁଳଲକ୍ଷ୍ମୀ ତମେ, ମତେ ଛୁଇଁବାକୁ
ଯୋଗାଏନା ତୁମକୁ ;

ସୀତା—ଏଁ ଏଗୁଡ଼ା ସବୁ କ'ଣ କହୁଚ ଲକ୍ଷ୍ମଣ, କିଛି ବୁଝିପାରୁ-
ନାହିଁ ମୁଁ—ବୀର, ଆଉ ପୁରୁଷ ତମେ, ଏତେଦୂର ବିଚଳିତ
କାହିଁକି ? ଏ ଲୋକ ଶୂନ୍ୟ ବଣଟା ମଝିରେ—କଣ କରିବି
ମୁଁ ଲକ୍ଷ୍ମଣ ?

ଲକ୍ଷ୍ମଣ—ହଁ ମା—କ'ଣ କରିବ, ଏଇ ପଞ୍ଚାକ୍ଷର ଆଜ ସାରା ଅଯୋଧ୍ୟାକୁ ଜପ କରିବାକୁ ପଡିବ;

ସୀତା—କାହିଁକି ? କାରଣ କ'ଣ ? ବିଶ୍ୱଜୟୀ—ପରଜାରଞ୍ଜନ ଶ୍ରୀରଘୁବୀରଙ୍କର ରାଜ୍ୟରେ—

ଲକ୍ଷ୍ମଣ—ମା, ସେଇ ପରଜା ରଞ୍ଜନ—'ଆଜ ତ କାଳହୋଇ ଗ୍ରାସ କରିଛି ରଘୁକୁଳକୁ' କ୍ରମେ କ୍ରମେ ଧ୍ୱଂସ କରିବ ସେମିତି ସାରା ଅଯୋଧ୍ୟାକୁ—ସବୁଥିରେ ସୀମା ଅଛି—କିନ୍ତୁ ଅଯୋଧ୍ୟାର ମହାରାଜା ସୀମା ଟପିଛନ୍ତି ।

ସୀତା—ସୀମା ଟପିଛନ୍ତି—କପରି ?

ଲକ୍ଷ୍ମଣ—ଲଙ୍କାରେ ବନ୍ଦିନୀ ଥିଲେ ବୋଲି ସାଧ୍ୱୀ ଶିରୋମଣୀ ଅଯୋଧ୍ୟା ପାଟମହାଦେଈଙ୍କ ଚରିତ୍ରରେ କଳଙ୍କ ଆରୋପ-କଲା କେଉଁ ଗୋଟାଏ ନୀଚ ଲୋକ—ସେଇଥିରେ ବିଚଳିତ ହୋଇ, ସହଧର୍ମିଣୀଙ୍କୁ ଚିରଦିନପାଇଁ ବନବାସର ଆଦେଶ ଦେଇଚନ୍ତି—ପ୍ରଜାରଞ୍ଜନ ପାଇଁ !

ସୀତା—(ଦୀର୍ଘନିଶ୍ୱାସ) ହଁ, ସେଇ ଆଦେଶ ପାଳନ କରିବାକୁ, ତମେ ମୋତେ ଏଠାକୁ ଏକୁଟିଆ ନେଇ. ଆସିଥିଲ-ନା-(ଦୀର୍ଘନିଃଶ୍ୱାସ) ଏଥିରେ ତିଳେମାତ୍ର ଦୁଃଖ ନାହିଁ ମୋର । ବୀର, ତମେ ମଧ୍ୟ ବିଚଳିତ ହେବାର ନୁହେଁ ଜାଣେ ସ୍ୱାମୀ ମୋତେ କେତେ ଭଲପାନ୍ତି—ଦେବର କେତେ ଭକ୍ତି କରନ୍ତି—ଅଯୋଧ୍ୟାର ରାଜପୁରୀ କପରି ସଦ୍‌ବ୍ୟବହାର କରେ; ପ୍ରଜାଏ କପରି ସଣଗାନ କରନ୍ତି; ହେଲେ କାଳର ଗତି, ରୋଧିବ କିଏ ? ପବିତ୍ର ରଘୁକୁଳର ମର୍ଯ୍ୟାଦା ରକ୍ଷା-ପାଇଁ ପ୍ରଜା ରଞ୍ଜନ ପାଇଁ ଅଗ୍ରଜ ତମର ଠିକ୍ କରିଚନ୍ତି,

ମୁଁ ମଧ୍ୟ ରାଜ ସିଂହାସନରେ ଥିଲେ ଏହାହିଁ କରିଥାନ୍ତି । ବର୍ତ୍ତମାନ ତମଠାରୁ ବ କଷ୍ଟ ମୋର ବେଶୀ ନୁହେଁ, ଆଉ ଜାଣେ ମୁଁ, ସନ୍ଧ୍ୟା ପ୍ରକୃତ ସେଗୁଡ଼ିକ ସେଇ ଅଗ୍ରଜ ତମର ରାଜା ସେ ଘଟନାରେ ସନ୍ଧ୍ୟାକୁ ବାହାରକୁ ଆସିବାକୁ ଦେଲେ ହାସ୍ୟାସ୍ପଦ ହେବେ-ଭଗବାନ୍, ପ୍ରଜାରଞ୍ଜନ ନାମ ସାର୍ଥକ ହେଉ ତାଙ୍କର । ଶେଷ ମାଗୁଣି, ତମେ ଯେପରି ତାଙ୍କ ପାଖେ ପାଖେ ଛାଇ ପରି ଲାଗିରହ-ଯେପରି ମୋର ଅନୁପସ୍ଥିତି ମୋଟେ ଅନୁଭବ ନ କରନ୍ତି ସେ ।

ଲକ୍ଷ୍ମଣ-ଅସମ୍ଭବ ମା-ଶେଏ ଲକ୍ଷ୍ମଣର ସେବାରେ ମଧ୍ୟ ତୁମକୁ ଭୁଲି ପାରିବେନି ସେ ।

ସୀତା—(ବିଚଳିତ ହୋଇ ପଡ଼ିଲେ) ହେଲେ କଣ କରାଯିବ-ଲକ୍ଷ୍ମଣ, (ହାତଧରି) ମାଆ ସବୁଙ୍କୁ ଆଉ ଭଉଣୀଙ୍କି କହିବ ସେମାନଙ୍କର ଶୁଭ ଇଚ୍ଛାରେ ସୀତା ତାର କର୍ତ୍ତବ୍ୟରେ ଯେପରି ଠିକ୍ ରହେ ।

ଲକ୍ଷ୍ମଣ—ଶୂନ୍ୟମନ-ଶୂନ୍ୟପ୍ରାଣ ଶୂନ୍ୟରଥ ନେଇ ଆଉ ଅଯୋଧ୍ୟାକୁ ଫେରିବାକୁ ଇଚ୍ଛା ହୁଏନା ।

ସୀତା—ଆଉ କ'ଣ ରହିବ ।

ଲକ୍ଷ୍ମଣ—ରାଜାଦେଶ ପାଳନ କରିଚି, ଏବେ ଅନୁମତି ହେଲେ, ମହାରାଣୀଙ୍କର ସେବାରେ, ଏଇ ବନରେ ।

ସୀତା—କିନ୍ତୁ ଏ ପରିସ୍ଥିତିରେ ତମେ ଅଗ୍ରଜଙ୍କର ସେବାରେ ରହିଲେ ସୀତା ଅଧିକ ସୁଖୀହେବ । ଆଉ ତମର ସୀତା ସହ ବନବାସରେ ରାଜାଦେଶ ଯଥାର୍ଥ ପାଳିତ ହେବ ନାହିଁ ।

ଲକ୍ଷ୍ମଣ—ହଁ (ସ୍ୱଗତ)ପୁଣି ଖଳଙ୍କର ଦୃଷ୍ଟିରେ କି ପ୍ରକାର ତେବେ ଏକାକୀ ଅନିର୍ଦ୍ଦିଷ୍ଟ ଭାବରେ ବନରେ ଘୂରିଲେ ।

ସୀତା—ମହାରାଜ, ରାଜମାତା ଊର୍ମିଳା ଏମାନଙ୍କ ପ୍ରତି ତମର ସବୁ କର୍ତ୍ତବ୍ୟ ସରିଛି ? ଶାନ୍ତି ପାଇବ ତମେ ?

ଲକ୍ଷ୍ମଣ—ତେବେ ପୁଣି ଯିବ ବଗୃରହୀନ ଅଯୋଧ୍ୟାକୁ—

ସୀତା—ଏପରି କୁହନାହିଁ ବୀର—ସବୁ ପରିସ୍ଥିତି ନେଇ ଗଢିକଲେ ମଣିଷ, ମଣିଷ ହୁଏ ।

ଲକ୍ଷ୍ମଣ—ରାଜ୍ଞୀମାତର ଏଇ ପଶୁ ଆଚରଣ କର, ମଣିଷପଣିଆ କଣି-ବାକୁ ଆଉ ଗୃହେଁନା ଲକ୍ଷ୍ମଣ । ଆଶୀର୍ବାଦ କର, ପଥରେ ଯେମିତି ପ୍ରାଣବାୟୁ ଅଯୋଧ୍ୟାର ରାଜଦମ୍ଭ ପଦରେ ଲୀନ ହେଉ ।

ସୀତା—ତମେ ଏତେ ବିଚଳିତ ହେଲେ ଏକାକୀ ସୀତା କିପରି ସ୍ୱାମୀର ଆଦେଶ ପାଳନ କରିବାକୁ ସକ୍ଷମ ହେବ ?

ଲକ୍ଷ୍ମଣ—ନା ବିଚଳିତ ନୁହେଁ ଆଉ, ଝାଣ ପାହାନ୍ତର ବୁକୁ ବାନ୍ଧ ଗୃଲିଲି ମା—

ସୀତା—(ଛଳ ଛଳ ଆଖିରେ ଗୃହିଁଚନ୍ତି)—ରଥରେ ଲକ୍ଷ୍ମଣ ଗୃଲି ଯାଉଚନ୍ତି ଏଇ କି ବେଗରେ—କି ବେଗରେ ଗୃଲିଯାଉଛି ଏ ରଥ—ଚଲିମିଶି ଦିଗବଳୟରେ—ମତେ ଯେମିତି ପ୍ରାଣ-ମୋର ଝାଣିନେଇ ଯାଉଛି—ଦିଶେନା ଆଉ—ଯାଅ ଲକ୍ଷ୍ମଣ ପ୍ରଭୁ-ଶ୍ରୀରାମଚନ୍ଦ୍ର—(ପତନ)

**ପତନ ଝପ**

— — —

# ୨ୟ୍ୱ ଅଙ୍କ

## ପ୍ରଥମ ଦୃଶ୍ୟ

( ଅଯୋଧ୍ୟା ରାଜକକ୍ଷ )

(ଦୁଃଖରେ ପାଗଳପରି ହୋଇଚନ୍ତି ଶ୍ରୀରାମ)

ଶ୍ରୀରାମ—ରାଜା ! ରଜା ! ମୁଁ ସୀତା ଅଯୋଧ୍ୟାର ସିଂହାସନକୁ ମଥା ବଢ଼ାଉଚ, (ଲକ୍ଷ୍ମଣ ଚହିଁଙ୍କୁ ଅଭିବାଦନ କଲେ) ଯଶସ୍ୱୀ ହୁଅ—ମହାଦେବଙ୍କୁ କେଉଁଠାରେ ଛାଡ଼ି ଆସିଲ ଲକ୍ଷ୍ମଣ ?

ଲକ୍ଷ୍ମଣ--ଗଙ୍ଗା କୂଳରେ ଜଙ୍ଗଲରେ, ଏକାକିନୀ ଛାଡି ଆସିଲି ।

ଶ୍ରୀରାମ—ଠିକ୍ ବିଚାର ହୋଇନାହିଁ ବୀର ? ଅଯୋଧ୍ୟାର ସିଂହାସନର ବିଚାରରେ କି ଭୁଲ ଥାଇପାରେ ?

ଲକ୍ଷ୍ମଣ--ଠିକ୍ ହୋଇଚି ମହାରାଜ, ଲକ୍ଷ୍ମଣ ପ୍ରତି ସେହି ବନବାସ ଆଦେଶ ହେଉ ।

ଶ୍ରୀରାମ--ହୁଁ, ଅଧୀର ହେଉଚ କାହିଁକି ବୀର, ସମୟରେ ହେବ, ତାପରେ ଦିନ ଆସିବ, ଯେତେବେଳେ ଅଯୋଧ୍ୟାର ରାଜା ରାମଚନ୍ଦ୍ରର ବିଚାର ହେବ ।

ଲକ୍ଷ୍ମଣ--ଏୟୁଁ, ଅଯୋଧ୍ୟାର ରାଜା ରାମଚନ୍ଦ୍ରର ବିଚାର ହେବ, ଆଉ ବିଚାର କର୍ତ୍ତା ଏଇ ମୂର୍ଖ ପ୍ରଜା ନା କଣ ?

ଶ୍ରୀରାମ—ନିଶ୍ଚୟ ନ ହେବେ କାହିଁକି, ମୂର୍ଖ କହୁଚ, ତମେ ନା ଆଉ କେହି ?

ଲକ୍ଷ୍ମଣ--ମୁଁ କହୁଚି--ମହାରାଜ ଛାଡ଼ନ୍ତୁ--ମହାରାଜାଙ୍କର କି ଦୋଷରେ ବିଚାର ହେବ ?

ଶ୍ରୀରାମ—ମହାରାଜାଙ୍କର ଦୋଷ ଧରି ପାରିନା ତମେ ଲକ୍ଷ୍ମଣ—
ହାଃ ହାଃ ବେଶ, ଉତ୍ତମ ଦୋଷଶୂନ୍ୟ-ସୁସ୍ଥ ଅଛନ୍ତି
ମହାରାଜ, ହଁ ବୁଝିଲି,—ଅଗ୍ରଜ ତମର କେବଳ ଜାନକୀ
ପ୍ରିୟତମ ନୁହନ୍ତି—ସେ ଯେ ପ୍ରଜାରଞ୍ଜନକାରୀ କୋଶଳ
ମହାରାଜ ।

ଲକ୍ଷ୍ମଣ—ଆପଣଙ୍କର ବିଚାର ଅନୁସାରେ ଠିକ୍ ତ ?

ଶ୍ରୀରାମ—ସବୁ ଠିକ୍ ଲକ୍ଷ୍ମଣ, ଅଯୋଧ୍ୟା ରାଜସିଂହାସନ ବିଚାରରେ
ଭୁଲ କେବେହେଁ ; କେବଳ ଗର୍ଭବତୀ ଥିଲେ ମହାଦେବୀ

ଲକ୍ଷ୍ମଣ—ବଣରେ ଏକୁଟିଆ ହେଲେ ସତୀର ଅମଙ୍ଗଳ ନାହିଁ
ବୋଲି ତ ଯୁକ୍ତି କଲେ-ମହାରାଜ ! ପୁଣି ସେ କଥା
କାହିଁକି ?

ଶ୍ରୀରାମ—ଠିକ୍ତ ଲକ୍ଷ୍ମଣ—ଅଯୋଧ୍ୟା ସିଂହାସନର ବିଚାର ।

କୌଶଲ୍ୟା—ବାବା, ରାଜା ତୁ ସତ, ଅଯୋଧ୍ୟାର ପ୍ରଜାଙ୍କ ଉପରେ
ତୋର ହୁକୁମ ଚାଲେ—କିନ୍ତୁ ରାଜମାତା କୌଶଲ୍ୟା ବଞ୍ଚି
ଥାଉଁ ଥାଉଁ ଅନ୍ଦରମହଲର ପାଟମହାଦେବୀଙ୍କ ଉପରେ
ହୁକୁମ ଜାରି କରିବାର ଅଧିକାର ତୋତେ କିଏ ଦେଲା ?

ଶ୍ରୀରାମ—ମା ! ଅଯୋଧ୍ୟାର ସିଂହାସନରେ ବିଚାର ।

କୌଶଲ୍ୟା—ସିଂହାସନରେ ବୁଡାଇ ଦେଇ ଯଥେଚ୍ଛାଚାର ତୁ କରିବୁ
ବାପ, ଗୋଟାଏ ଖଳୁଆର କଥାରେ ମୋ କୁଳଲକ୍ଷ୍ମୀକି,
ମୋ ଅଜଣାରେ ଠକାଇ ନେଇ ବଣରେ ବାଘ ଭାଲୁଙ୍କ
ମୁହଁରେ ଛାଡ଼ି ଦେଇ ଆଇଲୁ, ଗର୍ଭରେ ତାର ପୁଣି
ଭବିଷ୍ୟତର ବଂଶଧର ମୋର ।

ଶ୍ରୀରାମ—କ'ଣ କରିବି ମୁଁ ମା—ମୋର ହାତ ଗୋଡ଼ରେ ଯେ
ରାଜମାନ ବେଢ଼ି, ମାର ହୃଦୟ ନେଇ କି ଶାସନ ଚଳେ ?

କୌଶଲ୍ୟା—ନା' କାଳଚର ସତ ରଖିବାକୁ ଯାଇ ବାପା ତୋର ବଣକୁ ଠେଲିଦେଲେ ପୁଅବହୁଙ୍କୁ, ମୋର ଆଖି ଆଗରେ। ବାପ, ମା ଆମେ ଯିବାକୁ ବାହାରିଲୁ—ଫେରାଇ ଦେଲୁ ତୁ; ପ୍ରାଣଟା ମୋର ହୁଖଣ୍ଡ ହୋଇଗଲା 'ପୁଅ-ବହୁ, ପୁଅବହୁ' ଝୁରି ଝୁରି ବାପ ତୋର ସ୍ୱର୍ଗକୁ ବାଟ କାଟିଲେ; ଅଧାପ୍ରାଣ ଉଡ଼ିଗଲା, ବାକି ଅଧକ ଦରମରା ହୋଇ ପଡ଼ିଥିଲା ତମକୁ ଚାହିଁ। ବଣରୁ ଫେର ମୁହଁରେ ଟିକଏ ଜୀବନ ଦେଇ ଥିଲ ତମେ—ଆଉ ଆଜି ପୁଅ ତୁ ମୋର, ପୁଣି ସେଇ ଖଣ୍ଡକରୁ ଅଧାକାଟି ବଣ ବାଘ ଭାଲୁଙ୍କ ମୁହଁରେ ପକାଇ ଦେଲୁ; ଏ ମଲା ଗୁଡ଼ୀଟାକୁ ଟିକଏ ପଚାରିଲୁ ନାହିଁ ?

ସୁମିତ୍ରା—କ ହେଉଥିବ ହୁଶୁଚ୍ଛନ୍ନ ପୁଅ, ସୀତା ପରି ବହୁକୁ ତୁ କ'ଣ କଲୁ ? ଏଇଆ ତୋର ଦେଖିବୁ ବୋଲି ଆମେ ପ୍ରାଣ ଧରି ବଞ୍ଚିଚୁଁ ?

କୌଶଲ୍ୟା—ସିଂହାସନରେ ଆଉ ଅଭିଷେକ ହବ ଇଏ; (ରାମଙ୍କୁ) ଯଜ୍ଞ, ଦାନ ତୁ କେମିତି କରିବୁ, ରାଜମାତା ପରି ବଖା-ଣୁକୁ, ହାତଧରା ସ୍ତ୍ରୀକି ଛାଡ଼ି ସାଧାରଣ ଲୋକ ପିଣ୍ଡଟିଏ ବାଢୁଚନା ? ନଇଲେ—ବାବା—ବଂଶକୁ ପିତୃ ପୁରୁଷ-ଙ୍କର ପିଣ୍ଡପାଣି ଝୋପାକ ମଧ ବନ୍ଦ କଲୁ—ହାୟ କପାଳ !

ସୁମିତ୍ରା—ଏଇପରି ଭାଇବ୍ରତ ଭକ୍ତ ତୋର (ଲକ୍ଷ୍ମଣଙ୍କୁ କହିଲେ) ଏଇଥିପାଇଁ ଭ୍ରାତୃଭକ୍ତ ବୋଲାଉଚୁ ନା ?

ଶ୍ରୀରାମ—ତାର କ ଦୋଷ ଅଛି ମା—ଯେତ ଭାଇର ଆଦେଶ, ରାଜାର ହୁକୁମ ଠିକ୍ ଠିକ୍ ପାଳନ କରିଚ। ମହାଦେବୀଙ୍କୁ ବଣକୁ ନ ପଠାଇବାକୁ ମୋ ସଙ୍ଗରେ ଲଢ଼ିଚ।

ଲକ୍ଷ୍ମଣ—ମୋ ଦ୍ୱାରା ଯାହା ହୋଇପାରେ ସବୁ କରିବ ମା—ବାକି ପ୍ରାଣଟାକୁ ଗ୍ଛଡ଼ ପାରିନି—ସେଟା ଯେଇ ଆର୍ଯ୍ୟଙ୍କର ଅଧିକାରରେ ବୋଲି ।

ସୁମିତ୍ରା—ହୁଁ, ଆମର ଅଗୋଚରରେ !

କୌଶଲ୍ୟା—କି ଗୋ, ବଡ଼ ତ ମନାକଲା !

ଶ୍ରୀରାମ—ହଁ ମା, ରାଜନୀତି ସେଇପରି ।

କୌଶଲ୍ୟା—ଗ୍ଲଲ ବାବା-ଆଉ କି ଅଛି; ମତେ ମୋ ମା ଲକ୍ଷ୍ମୀ ପାଖକୁ ନେଇଗ୍ଲଲ; ନଇଲେ ମୁଁ ନିଜେ ଖୋଜି ଖୋଜି ପଳାଇବି ।

ଶ୍ରୀରାମ--ମା !

ସୁମିତ୍ରା--ତୁ କାହିଁକି ପାଟ ମହାଦେବୀଙ୍କ ସାଙ୍ଗରେ ନ ରହିଲୁ ; ମୁହଁ ଦେଖାଇଲୁ ପୁଣି ଏଠି ମତେ ଆସି !

ଲକ୍ଷ୍ମଣ--ସେପରି ଆଦେଶ ନ ଥିଲା ମା--ତାର ପର

ସୁମିତ୍ରା--ନିର୍ବୋଧ ! ବଡ଼ ପଦ ପାଗଳାମି କରି ତାର ବେକ କାଟିବାକୁ ଆଦେଶ ଦେଲା-କରିଗଲୁ ତୁ, ଅବସ୍ଥାର ବସ୍ତୁର ମଥାରେ କାହିଁ ତୋର ?

ଶ୍ରୀରାମ--ନାଁ ମା, ରାଜନୀତି ଯେ, ମୋ ଆଗରେ ମୋ ସାନ ଭାଇକୁ ତମେ ଇମିତି କହ ନାହିଁ ମା ! ଅଯୋଧ୍ୟାର ରାଜନୀତିରେ କି ଭୁଲ ?

ଲକ୍ଷ୍ମଣ--ମହାଦେବୀଙ୍କ ଯେ ପୁଣି ବାଧ କଲେ ମା ତାଙ୍କ ଅନୁପସ୍ଥିତିରେ ଜୀବନର ଆକାଙ୍କ୍ଷା କରି ତାଙ୍କ ପାଖେ ପାଖେ ଗ୍ଲଇବାର ଲାଗି ରହିବାକୁ କେତେ କହିଲେ; ନ ହେଲେ ଲକ୍ଷ୍ମଣ, ଆଜି ଏ ପୋଡ଼ାପ୍ରାଣ ଧରି ତମମାନଙ୍କ ପାଖକୁ ଫେରି ନଥାନ୍ତା ମା-

ରାମ — ହାୟ ସୀତା ! ରାଜା ମୁଁ ମାତ୍ର ତୋର କନ୍ଥାନୁଚର, (ପଡ଼ିଯିବା ପରି ହେଲେ) ।

ଲକ୍ଷ୍ମଣ — (ହଠାତ୍ ଧରିନେଲେ) ମୂର୍ଖପ୍ରଜା । ଦେଖିଯା ! ପଦେ କଥାରେ ଆଜ କେମିତି ଜାଳି ଦେଲୁ ଏ ଉଆସଟାକୁ ! (ଆସନରେ ବସାଇ ଦେଲେ) ।

ସୁମିତ୍ରା — (ଠିକ୍ ସେଇ ସାଙ୍ଗେ ସାଙ୍ଗେ କହିଲେ) ଇଲୋ କଣ ହେଲା ଲୋ ମୋ ପୁଅ) ।

କୌଶଲ୍ୟା—ଆଉ ପୁଅ ହବ, ସେ ରାଜୁତି କରିବ, ଏ, ପାଣି-ପାଣି···

**ଯଷ୍ଠ ପତନ**

## ୨ୟ ଦୃଶ୍ୟ

ଭାଗୀରଥୀର — ସନ୍ଧ୍ୟା ନିକଟ ହୋଇ ଏଇ ଆସୁଛି ।

ସୀତା — ହତଭାଗିନୀକୁ ପତି ସେବାର ସୌଭାଗ୍ୟ କାହୁଁ ମିଳିବ ? ଓଃ ପ୍ରିୟତମ — ନା, ନା, — ତମର ଦୋଷ କ'ଣ ? ରାଜା ତମେ, ପ୍ରଜାରଞ୍ଜନ ତମର ଧର୍ମ । ସବୁ ଏଇ ପୋଡ଼ା କପାଳୀର ଭାଗ୍ୟ, ନଇଲେ ରାଜରାଣୀ ହେବା ଦିନରେ ବନବାସ — ତଥାପି ଦୁଃଖ ନାଭିଲି ନାହିଁ । ଅସୁର ଘରେ ବନ୍ଦିନୀ; ସେତେବେଳେ ଯେବେ ଯାଇଥାନ୍ତା ପୋଡ଼ାପ୍ରାଣ — ଆଜ ଆଉ କଳଙ୍କିନୀ ବୋଲି ପ୍ରଜାର ସନ୍ଦେହ ହୋଇ ନଥାନ୍ତା କନ୍ତୁ, ପ୍ରିୟତମ, ତମେ ଜାଣ, ଜାଣନ୍ତି ଲକ୍ଷ୍ମଣ — ଲଙ୍କାରାଜ ବିଭୀଷଣ, ଆଉ ସେଇ ବନପଶୁ ବାନର

ଗ୍ରାସୁଏ—ଅଗ୍ନିଦେବତା ପରୀକ୍ଷାରେ ତାଙ୍କର, ଆକାଶରେ ସୂର୍ଯ୍ୟ, ଚନ୍ଦ୍ର, ତାରା, ପାଣି, ପବନ, ମାଟି ସମସ୍ତେ ଜାଣନ୍ତି ସୀତା କେତେଦୂର କଳଙ୍କିନୀ, ଉଃ କି କଷ୍ଟ !! କି ଯନ୍ତ୍ରଣା !! ଜନକ ମହର୍ଷିଙ୍କର କନ୍ୟା—ଭଗୀରଥ କୁଳର ବୋହୂ—ଅଯୋଧ୍ୟା ରାଜା ରାମଚନ୍ଦ୍ରଙ୍କର ସହଧର୍ମିଣୀ—ଆଜି କଳଙ୍କିନୀ ।

ପ୍ରଭୁ, ସ୍ୱାମୀ—ହୃଦୟ ନାଗର ସର୍ବସ୍ୱ—ମନ-ପ୍ରାଣର ଠାକୁର—ତମର ଶ୍ରୀ ଚରଣ ସେବା ଆଉ ଏ ଭାଗ୍ୟରେ ନାହିଁ, ତମର ମଧୁର କଅଁଳ କଥା ଆଉ ଏ ପାପ କାନରେ ପଡ଼ିବ ନାହିଁ । ତେବେ ହୀନ ଜୀବନରେ ଆଉ ଦରକାର କ'ଣ ? ଏଇ ଯେ ମୋର ଭିତର ଝଡ଼ପରି ବାହାରେ ଝଡ଼ ଉଠିଛି-ମା ପତିତପାବନୀ ଗଙ୍ଗା, ତୋର କୋଳକୁ ବାଟ କାହିଁ ମା ?

ନା, ମା—ଶାନ୍ତ ଦାୟିନୀ ତୁ—ତୋର କୋଳରେ କଳଙ୍କିନୀ ? ଅପଦାର୍ଥ, ସ୍ୱାମୀ-ପରିତ୍ୟକ୍ତାର ସ୍ଥାନ କାହିଁ ମା ? ( ଦୀର୍ଘ ନିଶ୍ୱାସ ) କାୟମନୋବାକ୍ୟରେ ଯେ ପାତିବ୍ରତ୍ୟ ଗ୍ରହଣ କରିଚି, ଗର୍ଭରେ ତାର ସେଇ ପତି ଦେବତାଙ୍କର ସନ୍ତାନ—ଜାଣୁ ଜାଣୁ କପରି ଶିଶୁ ହତ୍ୟା କରିବ ମା—ଭାଗ୍ୟଧରର ଯେ ଇଚ୍ଛା—ଠିକ ଠିକ କରି, ଧୀରେ ଧୀରେ ସୀତାର ରକ୍ତ ମାଂସରେ ବିଷ ପୂରାଇ ମାରିବ ମା: ଏଇ ଯେ ଆସିଗଲା ଝଡ଼, ଖୁବ୍ ନିକଟରେ—ଉଃ କି ପବନ—ଉଡ଼ାଇ ନେବ ଜୀବନଟା, ବଜ୍ର ମେଘ ଯେମିତି ଭାଙ୍ଗି ପଡ଼ୁଛି । ପ୍ରଭୁ ଇଷ୍ଟଦେବ—ଏକାକିନୀ ହିଂସ୍ର ଜନ୍ତୁ ପୂର୍ଣ୍ଣ, ଏ ଅପରିଚିତ ଜଙ୍ଗଲରେ ସୀତା ହତଭାଗିନୀ

ମରଣକୁ ବରଣ କରେ । କନ୍ତୁ ଗର୍ଭରେ ପ୍ରଭୁ ରମର ସନ୍ତାନ । ଅସଂଖ୍ୟ ମନକାମନା ପୂରଣ କରିବ ଆଜି ଏତିକ ଅଳି —

ବାଲ୍ମୀକ — (ଡାକ ୨) ଜନକନନ୍ଦିନୀ, ଅଯୋଧ୍ୟାର ପାଟରାଣୀ — ମା!

ସୀତା — କଏ ? କଏ ଡାକଲା ଆଉ ମତେ ?

ବାଲ୍ମୀକ — ମା ! ମୁଁ ଯେ ବାଲ୍ମୀକ ।

ସୀତା — ବାଲ୍ମୀକ, ବାପା । (ପଦତଳେ ପଡ଼ି କାନ୍ଦିଲେ)

ବାଲ୍ମୀକ — (ଉଠାଇନେଇ) ସବୁ ଜାଣେ ମୁଁ ମା ! ମୁଣ୍ଡ ଉପରେ ଝଡ ହୋଇଗଲା — ଆଉ ଡର ନାହିଁ — ଶୀଘ୍ର ଆଶ୍ରମକୁ ଚାଲ ସେଠି କଥା ଭାଷା । (ଉଭୟଙ୍କ ପ୍ରସ୍ଥାନ)

## ପଞ୍ଚ ପତନ

## ତୃତୀୟ ଦୃଶ୍ୟ

( ଚାରଣମାନଙ୍କର ଗୀତିକା — ଅଯୋଧ୍ୟା ରାଜପଥରେ )

ଶୁଣିଚ କ ଆଉ କେଉଁ ଦେଶ ଇତିହାସେ
ନାରୀପ୍ରେର ସଙ୍ଗେ ସ୍ଥିର ପକ୍ଷୀ ଲଢ଼ିବସେ,
ଭାଲୁ , ମାଙ୍କଡ଼, ବେଢିଁଚନ୍ତି ସମୁଦ୍ରର ବାଡ଼ ଗୋ ।
କୁଡ଼ କୁଡ଼ ଆତତାୟୀ କରି ଦୁଇଗଡ଼
ଜଣିଚନ୍ତି ଅନ୍ୟାଚାରୀ ଅସୁରର ଗଡ଼,
ସାନ ଗୁଣ୍ଡୁଚି — ସମୁଦରେ ବନ୍ଧ କାହିଁ ବାନ୍ଧିଚ ?

ନ ଶୋଇ ନ ଖାଇ କାନ୍ଦି ଯୁଗ କାଳଧରି
ଯୁବତୀ ରତନ ଗୃହ ବଦନ ପାଶୋରି,
ଭାଇ ଭାଉଜ – ସେବାରେ ଲେକ ପାଇଛି ମଉଜ ।
ବାପ ସତ ରଖି ରଜାଙ୍କର ପୁଅ ବୋହ୍ନୁ
ସିଂହାସନ ଶ୍ରୁତ ବଣେ ଘୂରିବାର ଆଜ
କେଉଁ ଦେଶ କ, ନୂଆ କ ପୁରୁଣା ଲେଖା ସାକ୍ଷୀ ଗୋ ।
ପରଜାରଞ୍ଜନ ପାଇଁ ପାଠ ମହାଦେଈ
ମିଛ ଅପବାଦ ବୋଝ ମଥା ପରେ ନେଇ
ପତି ଆଦେଶେ, ପ୍ରତିବାଦ ବିନା ନେଇଜେ ଉଆସେ ।
(ପ୍ରସ୍ଥାନ)

– – – –

## ୪ର୍ଥ ଦୃଶ୍ୟ

(ଶୟନ କକ୍ଷରେ – ରତ୍ନଦୀପଟିଏ ଜଳୁଛି ମିଞ୍ଜି ମିଞ୍ଜି, ଶ୍ରୀରାମଚନ୍ଦ୍ର ଶୋଇ ସ୍ୱପ୍ନ ଦେଖୁଚନ୍ତି – ହଠାତ ଅଲୋକ ଦେଖାଗଲା – ଧୀରେ ଧୀରେ ଏକ ଜ୍ୟୋତିର୍ମୟୀ ସୁନ୍ଦରୀ ଦେବକନ୍ୟା, ତାଙ୍କର ପାଦ ବନ୍ଦନା କରି ଠିଆହେଲେ)

ଶ୍ରୀରାମ – କିଏ ତମେ ଦେବି ।

ଶାନ୍ତ – ମୋର ନାଁ ଶାନ୍ତ ମହାରାଜ, ମୁଁ ଭରତ ତପୋବନବାସୀଙ୍କର ଅତି ପରିଚିତ – ପ୍ରିୟତମ – ନିକଟତମ ମୁଁ ମନୁଷ୍ୟ ଦେବତା ସଭିଏଁ, ମତେ ଧରିବାକୁ ଚାହାନ୍ତି ।

ଶ୍ରୀରାମ – ମନୁଷ୍ୟର କର୍ତ୍ତବ୍ୟପଥରେ ତମର ଆଲୋକ ମନ୍ଦର ନା–ମା?

ଶାନ୍ତ – ଶ୍ରୀରାମ ଜାଣନ୍ତ ନାହିଁ ବୋଧହୁଏ, ମାତ୍ର ମୁଁ ଅନେକ ଦିନୁ ଶ୍ରୀରାମଙ୍କର ହୃଦୟ ଆଉ ମନମନ୍ଦିରରେ ଖେଳୁଥିଲି, ବୁଲୁଥିଲି ।

ଶ୍ରୀରାମ – ମୋଠାରେ ଏତେ ଦୟା କିମିତି ହେଲା ମା ?

ଶାନ୍ତ – ରାମଙ୍କର କଲ୍ୟାଣମୟୀ ମା' କୌଶଲ୍ୟାଙ୍କର ସେବାରେ ମୁଗ୍ଧ ହୋଇଥିଲି ମୁଁ – ଆଉ ଜଗତ ବନ୍ଦ୍ୟା ମା ଜାନକୀଙ୍କର ଦର୍ଶନ ସୌଭାଗ୍ୟ ଯେପରି ପାଇଲି ରାମ – ଟାଣି ହୋଇ ଆସିଲି ମୁଁ ।

ଶ୍ରୀରାମ—କିନ୍ତୁ ଏତେ ଦିନେ ତମର ଦର୍ଶନର ସୌଭାଗ୍ୟ ପାଇଛି ମା !

ଶାନ୍ତ – ଦୁଃଖର କଥା! ରଘୁନାଥ – ଏଇ ଯେ ଶେଷ ଦେଖା । ବିଦାୟ– ମାଗୁଣି ମୋର ପୂର୍ଣ୍ଣ କରନ୍ତୁ ।

ଶ୍ରୀରାମ – କାହିଁକି ମା ?

ଶାନ୍ତ – ତା'ପୁଣି ଆପଣଙ୍କ ପରି ବୁଦ୍ଧିମାନ ବ୍ୟକ୍ତିଙ୍କୁ ବୁଝାଇବାକୁ ପଡ଼ିବ । ଏଇ ଯେ ରାଜଲକ୍ଷ୍ମୀ ମା ଜାନକୀଙ୍କ ପ୍ରତି ଶ୍ରୀହଜୁର-ଙ୍କର ବ୍ୟବହାର ମୋ ଆଖିରେ ଅତି ଅସୁନ୍ଦର ହୋଇଛି ।

ଶ୍ରୀରାମ – ରାଜନୀତି କ୍ଷେତ୍ରରେ, କର୍ତ୍ତବ୍ୟରେ ମୁଁ କଣ ତ୍ରୁଟି କରିଛି ମା, ଯଦିଓ ସୀତା ଦୋଷଶୂନ୍ୟା ତଥାପି ପ୍ରଜାରଞ୍ଜନ ପାଇଁ –

ଶାନ୍ତ-–ସୀତାଙ୍କୁ ଛାଡ଼ିଲେ-କିଛି ନ ଥିଲା, ମାତ୍ର—ସହଧର୍ମିଣୀ ସେ—ତାଙ୍କୁ ଶ୍ରୀରାମ ଠକାଇଛନ୍ତି—ବନ ଦର୍ଶନର ଛଳନାରେ ଚିର ବନବାସିମା କରାଇଛନ୍ତି—

(ସ୍ୱପ୍ନ ଭାଙ୍ଗିଗଲା—ଅନ୍ଧକାର ହୋଇଗଲା—ଧୀପଟି କ୍ରମେ ଲିଭି ଆସୁଥିଲା-ଶ୍ରୀରାମଚନ୍ଦ୍ର ଉଠି ବସିଲେ—ଭୂଲିତଳୁରେ)

ଶ୍ରୀରାମ—କାହିଁ ସେହି ଦେବୀ ପ୍ରତିମା—କ'ଣ ସ୍ୱପ୍ନ ଦେଖିଲି ମୁଁ ନା ମଥାର ବିକୃତ ! (ଦୀର୍ଘ ନିଃଶ୍ୱାସ) ଅଯୋଧ୍ୟାର ରାଜା ଠକାଇଛି ଆଜି ସହଧର୍ମିଣୀଙ୍କୁ (ଦୀର୍ଘନିଶ୍ୱାସ) ଯାଅ ଶାନ୍ତ ଶରଦିନ ପାଇଁ, ବିଦାୟ ଆନନ୍ଦରେ ଦିଏ ରଘୁପତି-ଯାଅ ଯେଇ ବାଲ୍ମୀକି କୁଟୀରକୁ—ପ୍ରିୟତମା ଜାନକୀ ଯେଉଁଠାରେ ତପସ୍ୱିନୀ (ଆଖି ଛଳ ଛଳ ହେଲା) ଅଯୋଧ୍ୟାର ରାଜମାତା କି ଭୁଲ ?

## ପଞ୍ଚ ପତନ

## ୫ମ ଦୃଶ୍ୟ

(ବାଲ୍ମୀକି ଆଶ୍ରମ-ତପ ଉପବନ – ସନ୍ଧ୍ୟାକାଳ)

ବାସନ୍ତୀ – ଦେଖିଲ ଭଉଣୀ ! ଏଇ କୁନ୍ଦ ଫୁଲଗୁଡିକ କେମିତି ଦିଶୁଛି ?

ସୀତା – (ଅନ୍ୟମନସ୍କ, ଧୀରେ)ହୁଁ ......

ବାସନ୍ତୀ—ଉଁ—ତମେ ଏତେ ଅନ୍ୟମନସ୍କ, ଯେତେ ମନାକଲେ ମୋତେ କଥା ରଖିଲ ନାହିଁ ।

ସୀତା—(ଦୀର୍ଘନିଃଶ୍ୱାସ) ନାଇଁ କଣ କହୁଚୁ କହ—ଆଉ ମୁଁ ତ ଅନ୍ୟମନସ୍କ ହେଉନାହିଁ ।

ବାସନ୍ତୀ – ନା ହେଉନା ? ଗୋଟାଏ କଥା ତିନଥର ପଚାରିଲେ ଜବାବ ମିଳୁ ନାହିଁ – ଏମିତି କଥା ବାବା ଶୁଣିଲେ ତାଙ୍କ ମନରେ ଅଶାନ୍ତି ଆସିବ ନାଇଁ ?

ସୀତା—ନା, ମୋ ସୁନା ଭଉଣୀଟିଏ ପରି ବାବାଙ୍କୁ ତୁ କିଛି କହିବୁ ନାହିଁ କଣ କହୁଥିଲୁ, କହିବୁଟି।

ବାସନ୍ତୀ—ମନ ସବୁଗଡ଼ବଡ଼ ହୋଇଗଲା, ଆଉ କହିବ କ'ଣ ? ତମେ ସବୁବେଳେ ଏଥର ମହାରାଜାଙ୍କ କଥା ଚିନ୍ତାକଲ—

ସୀତା—କ'ଣ କରିବ ଭଉଣି, ଯେତିକ ଭୁଲିବାକୁ ଚେଷ୍ଟା କରୁଛି—ସେତିକ ତାଙ୍କର ମଧୁର ରୂପ ଆଖି ଆଗରେ ଦିଶିଯାଉଛି। ଏଇ ଯେମିତି- ପାଖରେ ଆସି ହାତକୁ ମୋର ଧରି, କେମିତି ଚେନ୍ନେଇ ଡାକ ଦେଉଛନ୍ତି, ସୀତା-ମହାରାଣି ! ଏଇ ଖାଲି ଶୂନ୍ୟଟାକୁ-ତୋ ସାଙ୍ଗରେ କଥା କହୁଛି—ଜଣାପଡ଼ୁଛି, ଠିକ୍ ଯେମିତି ପଛଆଡ଼ୁ ଆସି ମୋ ଆଖି ଦୁଇଟିକୁ ବୁଜିଧରିଛନ୍ତି (ଛଳ ଛଳ ଆଖି ହୋଇଗଲେ)

ବାସନ୍ତୀ—(ଦୀର୍ଘ ନିଃଶ୍ୱାସ)ତମ ବିଷୟରେ କ'ଣ କହିପାରିବ ଭେଣ୍ଟେ କିଛି ତ ମତେ ଆଉ ଦିଶୁନାହିଁ-ଛୁଆ ଦୋଟିଙ୍କ ମୁହଁକୁ ଚାହିଁ ନା ଭଉଣୀ ତମକୁ ବା କ'ଣ ବୁଝାଇବି ମୁଁ। ସତୀ ସମାଜର ମଥାମଣି ତମେ, ସ୍ୱାମୀଙ୍କର ଆଦେଶ ପାଳନ ପାଇଁ ବନବାସିନୀ ହୋଇଚ—ପାଖରେ ତମର ଅଯୋଧ୍ୟାର ଯୁବରାଜ ଆଉ ତାଙ୍କର ଅନୁଜ-- ସେଇମାନଙ୍କୁ ରଘୁପତିଙ୍କ ଆଦର୍ଶରେ ଗଢିବାକୁ ଯତ୍ନ ଯତ୍ନ କରନ୍ତ, ସେଥିରେ ସ୍ୱାମୀସେବା ସଙ୍ଗେ ସଙ୍ଗେ, ଏ ମାନସିକ ଅଶାନ୍ତି ବି ରହନ୍ତା ନାହିଁ।

ସୀତା--ବାବା ତ ଦେଖୁଛନ୍ତି ସେମାନଙ୍କୁ-ମୁଁ ଅଧିକା ଦେଖିବି କ'ଣ ? ସେମାନଙ୍କର ଭବିଷ୍ୟତ ? (ଦୀର୍ଘ ନିଃଶ୍ୱାସ)

ବାସନ୍ତୀ—ରଜାର ପୁଅ ରାଜା-ଆଉ କ'ଣ ଭିକ ମାଗିବେ ? ନ ହେଲ ଏବେ ଅଯୋଧ୍ୟାକୁ ଫେରି ନ ପାରିଲେ, ବାହୁ ବଳରେ ସେମାନେ କ'ଣ କେଉଁ କାହାଁ ରାଜ୍ୟ ନ ନେଉଛନ୍ତି ।

ସୀତା—ହୁଁ, ରାଜ୍ୟ ନେଉଛିବେ, ତେବେ ଲ ହେଲା ବାଣ୍ଣ—

ବାସନ୍ତୀ—ହଉ ଭଉଣି, କେଲ କଷ୍ଟ ତ କହୁ ନେଉନା, ବେଳ ପଡଲେ ପୁଣି ଦେଖିବା-ଏଇ କାନ ଆଗରେ ଗଣ୍ଡି ଦେଉଛ ମୁଁ-ବାପଅଧିକା ପୁଅ ଯେବେ ନ ହୋଇଛନ୍ତି ! ଗୀତ ତ ତାଙ୍କର ଶୁଣୁଛ ଦେମ-ପଥର ପାଣି ହୋଇପିବ, ବଣର ବାଘ ଭାଲୁ ବ ନେଶ୍ରୁ ଭଣ୍ଡିଏ ଗୀତ ଶୁଣି ଠିଆ ହେଉଛନ୍ତି । ଆଉ ବାବା କହୁଛନ୍ତି ପରା, ସେଇଁକି ବନେଇଁ କେତେ ରକମର ଲୀଳା ଖେଳା ହାସଲ କଲେଣି ମ; ଉଡ଼ନ୍ତା ଚଢେଇକ ଏକା କାଣ୍ଡ୍ରେକ ଦେସାଇ ଦେଉଛନ୍ତି ସେ ଦିନ ମୁଁ ଦେଖିଛ ପରା, କୁଆ ସିଂହ ଛୁଆଟାକୁ ଧରିଥାଏ କି, ଲବ ତା ଉପରେ ବୋମ୍ବା ଚଢ଼ୁଥାନ୍ତେ--ମତେ ଆଜି କେମିତି ଲାଗିଲା ! ବାବା ଦେଇଁଲାକୁ ସେଟାକୁ ଛାଡ଼ିଦେଇ ଚୂପ୍ଟିଟପରେ ଠିଆ ହେଲେ ।

କୁଶ—(ଦୂରରୁ ଡାକଲେ) ମା ! ବାବା ଡାକୁଛନ୍ତି-ସନ୍ଧ୍ୟା ଆଳତି ସଜାଡ଼ିଦେବ ପରା ?

ସୀତା—ଆ ବସ (ଉଠିଯାଇ ଗୃହକୁ ଚଳେ)

## ୭ମ ଦୃଶ୍ୟ

( ଅଯୋଧ୍ୟା ରାଜପୁରୀ )

ଲକ୍ଷ୍ମଣ—ପୋଡ଼ଗଲା ଜଆମଠା, ଆଉ କ'ଣ ଅଛି ?

ଊର୍ମିଳା--ପାଟମହାଦେଈଙ୍କ ମହଲକୁ ତ ମୁଁ ଆଉ ମୋଟେ ଯାଉ ନାହିଁ ।

ସେ ପଟଟା ଖାଲି ଖାଇ ଗୋଡ଼ାଉଚି-ଆଉ ଏମାନଙ୍କ ଜଆମଠାରେ ବି ଯେମିତି ମାଛି ମାଛି ମରିଯାଉଚି ।

ଲକ୍ଷ୍ମଣ--ଏବେ ସେ କେମିତି ଅଛନ୍ତି ?

ଊର୍ମିଳା--ଅବସ୍ଥା ତ ବିଶେଷ କିଛି ବଦଳି ନାହିଁ--ସେଇ ରକମ, ଆଖିରୁ ତ ଧାର ଶୁଖିବାକୁ ନାହିଁ--ଓଳିଏ ମଣୋହି ବି ଜେ କଲେ, ଆଉ ଓଳିକ ମନା-ସେପାଖ ପୋଇଲି ପରିବାରିଏ ବି ଗୁମ୍‌ମାରି ବସିଚନ୍ତି । ଆଉ ମହାରାଜାଙ୍କ ଖବର କଣ ?

ଲକ୍ଷ୍ମଣ – ସେମିତି ଦିନରାତି ସାରା ସେ ରାଜ କାର୍ଯ୍ୟରେ ଖଟି ରହୁଚନ୍ତି – ତଥାପି ତ ଶାନ୍ତି ନାହିଁ, – ଦିହରେ ତ ଆଗ ଜ୍ୟୋତି ଆଉ ନାହିଁ ।

ଊର୍ମିଳା – ଧନ୍ୟ ତାଙ୍କ ଗୁଣ !

ଲକ୍ଷ୍ମଣ – ପଥର ଆଉ କ'ଣ ?

ଊର୍ମିଳା – ତେବେ ପ୍ରତିକାର ଆଜ୍ଞା କ'ଣ କିଛି ନାହିଁ ?

ଲକ୍ଷ୍ମଣ – କରୁଚି କିଏ ? ରାଜ କର୍ମଚାରୀଙ୍କ ପ୍ରତି ତ ମୁହଁ ବନ୍ଦ ହୁକୁମ ଆଉ ଏ ପ୍ରଜା କାହାର କି ଯାଏ ଆସେ ?

ଊର୍ମିଳା – ତେବେ ଯେ କେବଳ ଶାସନଗୋଷ୍ଠୀରେ ଦୋଷ ଦେଖିବାକୁ ହଜାରେ ଆଖି ।

ଲକ୍ଷ୍ମଣ—ଏସବୁ ଶୁଣିବାକୁ ବି ହଜାର କାନ—ଗାଇବାକୁ ହଜାରେ ମୁହଁ ବାହାର ପଡ଼େ ତାଙ୍କର ।

ଉର୍ମିଳା—କିନ୍ତୁ ଗୋଟାଏ କେତେବଡ଼ କାଣ୍ଡ ଘଟିଗଲା—ଗୋଟାଏ ସାମାନ୍ୟ ଲୋକର କଥାରେ—କାହାର ମୁଣ୍ଡରେ ତ ଆଉ କିଛି ପଶୁ ନାହିଁ !

ଲକ୍ଷ୍ମଣ—ପାପର ମାତ୍ରା ସେମିତି ବେଶୀ ନ ହେଲେ ଶାସନ କ୍ଷମତାକୁ କେହି ଆସେ ?

ଉର୍ମିଳା—ଏଠି ତ ଶାସନର କଥା ନାହିଁ, ଏ ଯେ ପୁଣି ଶାସିତ ହେବାର କଥା ।

ଲକ୍ଷ୍ମଣ—ଏପରି ଅବସ୍ଥାରେ ବରଂ ଗାଦି ଛାଡ଼ିଦେବା ଦରକାର ପ୍ରଜାଙ୍କ ହାତରେ—

ଉର୍ମିଳା—କିନ୍ତୁ ଗାଦିକୁ ଆସିବେ କିଏ ? ବଡ଼ମଝିଆଁ ମଣିମା ?

ଲକ୍ଷ୍ମଣ – ପାଗଳୀ, ଆଉ କେହି ଏଥିରେ ରାଜି ? ମହାରାଜା ଗାଦି ଛାଡ଼ିଲେ ଏଥର—ଉଆସର ବିଲେଇ କୁକୁର ପର୍ଯ୍ୟନ୍ତ ତାଙ୍କ ସଙ୍ଗେ ଗୋଡ଼ାଇ ଯିବାକୁ ପ୍ରସ୍ତୁତ, ନଇଲେ କ'ଣ ତା କରନ୍ତେ ନାହିଁକି ?

ଉର୍ମିଳା—ମହାଦେଈଙ୍କ ଗଲା ପରେ ରାଜ୍ୟରେ ସବୁ ହାଲଚାଲ ଭଲ ଅଛି ତ ?

ଲକ୍ଷ୍ମଣ—ଭଲ ଆଉ ହେବ—ଶ୍ରୀରାମଚନ୍ଦ୍ରଙ୍କ ପରି ସତ୍‌ପୁରୁଷ—ସତୀ, ସାଧ୍ୱୀ ସୀତାଙ୍କ ଚରିତ୍ର ଉପରେ ମିଥ୍ୟା କଳଙ୍କ ଆରୋପ—କ'ଣ ଠିକିଏ ନଥିଏ କଥା ହେଉଛି ? ଆଜି ଏକ ବୁଢା ବ୍ରାହ୍ମଣ କାନ୍ଦି କାନ୍ଦି ଶ୍ରୀମୁଖରେ ଜଣାଉଥିଲେ, ତାଙ୍କର ଯୁବା ପୁଅ ମରିଗଲା—

ଉର୍ମିଳା—ଆଃ—ବିଚରାର ଘର ଭାଙ୍ଗିଗଲା—କାରଣ କ'ଣ ?
ସେମାନଙ୍କର ନିଜର କର୍ମରେ କା'ର କିଛି ଦୋଷ ନାହିଁ ତ ?

ଲକ୍ଷ୍ମଣ—ବ୍ରାହ୍ମଣ ଦେବତା—ମିଛ କହିନ୍ତେ ସେ—ସେ ତ କହନ୍ତି ତାଙ୍କ ଜଣା ଶୁଣାରେ ତାଙ୍କ ପରିବାରରେ ସେମିତି କିଛି ଅନାଚାର ଘଟି ନାହିଁ—ଏଣୁ ତା'ର ପ୍ରତିକାର ନ କଲେ ସେ ରାଜ୍ୟ ଗୃହ ଛାଡିଯିବାକୁ ତିଆର ।

ଉର୍ମିଳା—ପ୍ରକୃତ ରଘୁକୁଳର ଶାସନ ମଧ୍ୟରେ କେଉଁଠି ଅଧର୍ମ ଛୁଇଁ ନ ଥିଲା—ଏହାର କାରଣ କ'ଣ ?

ଲକ୍ଷ୍ମଣ--ଗୁରୁଦେବ କହନ୍ତି--ଜଣେ ଶୁଦ୍ର--ବ୍ରାହ୍ମଣ ଆଚରଣ କରିବାରେ ଏପରି ଅପମୃତ୍ୟୁ ଘଟିଛି ।

ଉର୍ମିଳା--ତେବେ କଣ ଗୋଟାଏ ଜାତି--ଅନ୍ୟ ଜାତିର ଧର୍ମ ଆଚରଣ କରିପାରେ ନା ?

ଲକ୍ଷ୍ମଣ--ପାରେ, ସେ ସେଥିପାଇଁ ଉପଯୁକ୍ତ ହେଲେ । ଉପଯୁକ୍ତ ହେବାପାଇଁ ତ--ଆଗ ନିଜ ଧର୍ମ ସମ୍ପୂର୍ଣ୍ଣ ପାଳନ କରିବା ଉଚିତ । ଆଉ ସ୍ୱଧର୍ମରେ ଦୃଢଥିବା ଲୋକ ପରଧର୍ମ ଦରକାର କରେ ନା--ସେଇଥିରେହିଁ ଶାନ୍ତି ପାଏ ସେ ।

ଉର୍ମଳା--ହୁଁ ଅନ୍ୟଧର୍ମ ଆଚରଣରେ ଏହିପରି କ୍ଷତି ।

ଲକ୍ଷ୍ମଣ--ନାନାପ୍ରକାର କ୍ଷତି--ସମାଜରେ ଧର୍ମ କର୍ମ ପନ୍ଥାରେ ଗୋଳମାଳ ଶଙ୍କର କର୍ମ ଶଙ୍କର ବର୍ଣ୍ଣର ସୃଷ୍ଟି ଏ ସବୁରେ ।

ଉର୍ମିଳା--ତେବେ ମହାରାଜା--ଏ ବିଷୟରେ···

ଲକ୍ଷ୍ମଣ--କଅଣ କରିବେ, ଏଇ ସ୍ୱଧର୍ମ ଭ୍ରଷ୍ଟ ବୁଦ୍ଧିକୁ ଶାସନ କରିବାକୁ ଯାଇଛନ୍ତି । କିନ୍ତୁ, ଏ ସବୁ ବିଶୃଙ୍ଖଳାର ଅସଲ ମୂଳରେ ନିର୍ଦ୍ଦୋଷ ମହାଦେବୀଙ୍କ ଆଖିପାଣି !

ଶ୍ରୀ--(ନେପଥ୍ୟେ) ଏତକ ନୁହେଁ--ଅପେକ୍ଷା କର ଆସୁଚି ଆହୁରି ଦୁର୍ଦ୍ଦିନ ।

ଉର୍ମିଳା--କିଏ ? କାହାର କଣ୍ଠସ୍ୱର ?

ଶ୍ରୀ--ମୁଁ ସେ ଶ୍ରୀମା--ଅଯୋଧ୍ୟା ଛାଡ଼ିଯିବାକୁ ମନ ନ ଥିଲା ମୋର କିନ୍ତୁ ମହାଦେବଙ୍କଙ୍କର ଆଖିପାଣିରେ ଆଉ ତ ଏଠି ଭଲ ଗତି ନାହିଁ--ମୁଁ ବା ରହନ୍ତି କାହିଁକି ?

(ସ୍ତମ୍ଭୀଭୂତ ହୋଇ ଲକ୍ଷ୍ମଣ ଏବଂ ଉର୍ମିଳା ଚାହିଁଁଚନ୍ତି)

## ପଞ୍ଚ ପତନ

## ୭ମ ଦୃଶ୍ୟ

(ଭାଗୀରଥି ତୀର)

(ଭବାନୀ ଶିବଦୃଷ୍ଟିରେ ଚାହିଁ ରହିଛନ୍ତି--ରୋଷକଷାୟିତ ଚକ୍ଷୁରୁ ବହିର୍ଗତ ହେଉଚି ସ୍ଫୁଲିଙ୍ଗ ଧୂଆଁ ଚାରିଆଡ଼ୁ ମାଡ଼ି ଆସୁଚି, ପଳାଇ ଚାଲ ପଳାଇ ଚାଲ ରକ୍ଷାନାହିଁ--ଓଃ ସାରା ବଣଟା ଜଳିଗଲା--ରକ୍ଷାକର--(ଶିବ, ଶମ୍ଭୁ ଶଙ୍କର ଇତ୍ୟାଦି ଚିତ୍କାର ହେଉଥିଲାବେଳେ ଶିବଙ୍କର ପ୍ରବେଶ) ଶିବ--ଏ କଣ ଭବାନୀ । ତମେ ଆଜି ସୃଷ୍ଟି ଧ୍ୱଂସ କରିବାକୁ ବସିଚ ? କାରଣ କଣ ଏଥିରେ ?

(ନେପଥ୍ୟେ)--ମାଡ଼ି ଆସିଲା--ମାଡ଼ି ଆସିଲା ନିଆଁ--ଓଃ ରକ୍ଷା ନାହିଁ ଆଉ ଇତ୍ୟାଦି ଶବ୍ଦ ପୁଣି ବନ୍ୟ ଜନ୍ତୁଙ୍କର ଚିତ୍କାର)

ଶିବ--ଗୌରୀ ! ଅନ୍ନପୂର୍ଣ୍ଣା ନାମ ତମର--ସୃଷ୍ଟି ପାଳନ କରୁଚ ତମେ--ଆଜି କି କାରଣରେ ଆଖି ପଲକରେ ଏ ସୁନ୍ଦର ସୁନାର ସଂସାରକୁ ପୋଡ଼ି ଛାରଖାର କରୁଚ ?

ପାର୍ବତୀ--ଇଚ୍ଛା ମୋର ଦୁନିଆଁ ସଂହାର କରିବ । ସମସ୍ତ ପୁରୁଷଙ୍କୁ ତମଟାରେ ଠୁଳ--ପାରିଲେ ନାରୀର ଏଇ ଧ୍ୱଂସଲୀଳାକୁ ସବଡ କର ।

ଶିବ--ମଙ୍ଗଳମୟୀ--ଶିବର ସମସ୍ତ ଶକ୍ତି କାହା ଦେଇ ? ତମର ନାରୀଙ୍କୁ ତ ଶିବ କେବୁ ଅପମାନ କରି ନାହିଁ, ତେବେ ଏ ଲୀଳା ଆଜ କାହିଁକି ?

ପାର୍ବତୀ--ହଁ, ତମେ ଅପମାନ କରିନାହଁ ସତ, ମାତ୍ର ତମର ପୁରୁଷ ଜାତି ଏତେ ମିଚ--ଛି ! ଏଇପରି ଶ୍ରେଷ୍ଠ ବୀରର ବୁଦ୍ଧି ନେଇ ବାହାର ଦୁନିଆଁରେ ନିଜର ବଡେଇ ଦେଖାଇ ହୁଏ ସେ । ନିଜେ ବୁଢା ବୟସରେ ବି ଗୋଟାକୁ ଗୋଟା ସ୍ତ୍ରୀ ଗ୍ରହଣ କରିପାରେ--ଆଜ ଦେଖ, ଏଇ ଅଯୋଧ୍ୟାର ରାଜା ରାମଚନ୍ଦ୍ର ପରି ପୁରୁଷ ଗୋଟିଏ ସାମାନ୍ୟ ଲୋକ କଥାରେ କର୍ଣ୍ଣ କରି ବସିଛି ! ଅଗ୍ନିରେ ପରୀକ୍ଷା ଦେଇ ଆସିଛି ଯେଉଁ ସତୀ-ଶିରୋମଣୀ, ତାର ଗର୍ଭ ଅବସ୍ଥାରେ ତାକୁ ବଣରେ ଘଉଡାଇଛି,

ଶିବ--(ଅଳପ ହସିଲେ)

ପାର୍ବତୀ--ଆଜ ପୁଣି ଲକ୍ଷ୍ମଣ, ଭ୍ରାତୃଭକ୍ତିର ବଡ଼ିମା ଦେଖାଇ ବଣକୁ ନେଇଗଲେ ରଥରେ ତପୋବନ ଦର୍ଶନ କରାଇବାର ଛଳନାରେ--ଛି, ଛି !! ଅଯୋଧ୍ୟା ପ୍ରଜାଙ୍କର ବି ଏଥିରେ କାହାର ପାଟି ଫିଟୁନାହିଁ ଏଣେ ସତୀ ନାରୀ କାନ୍ଦି କାନ୍ଦି ଆକାଶ ଫଟାଉଛି--ପ୍ରାଣ ତାର ହାହାକାର କରି ଉଠୁଛି--ଗଙ୍ଗାରେ ଝାସ ଦେବାକୁ ବସିଛି ସେ ? ନା--ନା--ପୁରୁଷର ଏ

ଅନ୍ଧାଗୃହର ଆଉ ସମ୍ଭବାର ନୁହେଁ—ରାଜା—ରାଜ୍ୟର ଆଦର୍ଶ ! ଦୁନିଆଁର ମାତୃଜାତିକୁ ଅପମାନ କରିବାକୁ ଶିଖାଉଛି ; ରଘୁକୁଳ ରାଜମାତାଙ୍କର ଦଶା ଆଜି କ'ଣ ? କିଛି ଦେଖୁଛ ତମେ ?

ଶିବ—ହାଃ—ହାଃ—ହେଉ ହେଉ ଉମା—ଏବେ ରାଗ ଛାଡ଼, କଥା ଟିକିଏ ଟିକିଏ ଖୋଲି ହାଲୁକା ମୁଣ୍ଡରେ ବିଚାର କର— ଶ୍ରୀରାମଚନ୍ଦ୍ର କିଏ ? ସୀତା ଦେବୀ ବା କିଏ ? ସେ ଦୁହିଁଙ୍କର ସମ୍ପର୍କ କ'ଣ ? ସେମାନେ ଦଶରଥଙ୍କର ସତ୍ୟରକ୍ଷା କରିବା ଦିନଠାରୁ ଏତେ ନର୍ଯ୍ୟାତନା ଭୋଗୁଛନ୍ତି କାହିଁକି ?

ପାର୍ବତୀ—କ'ଣ କିଏ ? ଆପଣ ଜାଣିଥିବେ—କହନ୍ତୁ । ମୁଁ ଯେ ପ୍ରତିଜ୍ଞା କରିଛି ଆଜି ରାମଚନ୍ଦ୍ର ସହିତ ସମସ୍ତ ଅଯୋଧ୍ୟା— ଏଇ ସାରା ପୃଥିବୀରୁ କୀଟ ପତଙ୍ଗ ପର୍ଯ୍ୟନ୍ତ ସବୁ ଜୀବ ସୃଷ୍ଟିରୁ ଏ ପୁରୁଷ ଜାତିଟାକୁ ଧ୍ୱଂସ କରି ଦେବି !

ଶିବ—ବାଃ ବେଶ୍—ତେବେ ଦୁନିଆଁର ନୂଆ ସୃଷ୍ଟି ଆଉ କେମିତି ହବ—ଏତିକି ରାଗ ପୁଣି ତମର-ମାତୃଜାତି ପରି ଝିଅଙ୍କର ଦୋଷ ଦେଖି ମା' ଖୁନ୍ଦେ ଅଧେ ଦିଅନ୍ତି ନା – ଆଉ ଏମିତି ? ---ତେବେ ଆମ ଗଣେଶ, କାର୍ତ୍ତିକେୟ, ନନ୍ଦୀ, ଭୃକୁଟି ଆଉ ଶେଷରେ ମୋ ଦଶା ବା କ'ଣ ହେବ ?

ପାର୍ବତୀ—ଆଁ ଯ୍ୟ—ସତେ ତ – କ୍ଷମା କରନ୍ତୁ—ଭୁଲ୍ ହୋଇଛି ମୋର କିନ୍ତୁ ଏଇ ଅଯୋଧ୍ୟାର ପୁରୁଷ ଜାତିକୁ ଛାଡ଼ିବାର ନୁହେଁ ।

ଶିବ – ଭୁଲି ଯାଉଛ ତମର ପୂର୍ବଜନ୍ମ—ଏଇ ଶ୍ରୀରାମଚନ୍ଦ୍ରଙ୍କୁ ବୁଝି ନ ପାରି ପରୀକ୍ଷା କଲ ଦିନେ—ପରମ ବ୍ରହ୍ମ ପଦରେ ଅପରା- ଧିନୀ ହେଲ – ସେଥିପାଇଁ ସେ ଦେହ ଜାଳିଥିଲ ଯୋଗ ନିଆଁରେ – ଏବେ ପୁଣି ସେଇ କଥା—ଶ୍ରୀରାମ ପରି ବୈକୁଣ୍ଠ

ନାଥ – ସୀତା ବୈକୁଣ୍ଠର ରାଣୀ – ମହତ ଆଦର୍ଶ ଲୋକରେ ପ୍ରଚାର କରିବା ପାଇଁ ମାନବ ଲୀଳା କରୁଛନ୍ତି ସେ––

ପାର୍ବତୀ – ତେବେ ଯେ ସୀତାଙ୍କର ଏ ମର୍ମନ୍ତୁଦ ଯନ୍ତ୍ରଣା ଗୁପ୍ତଫଟା ବ୍ୟଥା – ଆଖିର ଲୁହଧାର – ସବୁ କଣ ମିଛ ?

ଶିବ––ମିଛ ନୁହେଁ ଉମା––ମଣିଷ ଶରୀର ସମ୍ପର୍କରେ ଆସିବାର ଫଳ ଏ––ମାୟାର ଅଧୀନ ହୋଇ ପଡ଼ିଛନ୍ତି––ଆଜି ଯଦି ସୀତା ଦେହତ୍ୟାଗ କରନ୍ତି ତେବେ ଲୀଳା ପୂର୍ଣ୍ଣାଙ୍ଗ ହେବ ନାହିଁ – ଆଉ ତମେ ଯେବେ ରାମ ପାଦରେ ଅପରାଧିନୀ ନ ହେବ – ତେବେ ତାଙ୍କୁ ବଞ୍ଚାଇ ତୁମେ ଦେବଲୋକରେ ଅଛ କି ନା––ତୁମର ପରଶରେ ଚେତନା ଆସିବ ତାଙ୍କର ଏଥୁଁ––ଯାଉଛି ମୁଁ ଧ୍ୟାନ ପୀଠକୁ ।

ପାର୍ବତୀ––ଓହୋ କେଡ଼େବଡ଼ ଭୁଲ କଲି ମୁଁ-ଆଉର କ'ଣ ବା ନ କରିଥାନ୍ତି ?

ପ୍ରଭୁ ଶ୍ରୀରାମଚନ୍ଦ୍ର କ୍ଷମାକର ।

ନମୋ ରାମ-ରାଜୀବଲୋଚନ––ରାଘବ ରାବଣାରି––
ଦଶରଥ ସୁତ ଦାନବଦଳନ ଦୀନବନ୍ଧୁ ଦୁଃଖହାରୀ
ପତିତ ପାବନ––ପାଷାଣୀ ତାରଣ
ବ୍ରାହ୍ମଣପ୍ରିୟ––ବ୍ରହ୍ମ ନିର୍ଗୁଣ
ବେଦ ପୁରାଣ ଗାଏ ତବ ଗୁଣ ଦଣ୍ଡକାରଣ୍ୟଚାରୀ
ଜାନକୀନାଥ ଜଗତ ଜୀବନ
ଜପୁ ରସନାରେ ରଘୁନନ୍ଦନ
ଜଞ୍ଜାଳ ଜାଲ ଛେଦନ ଠାକୁର କୃପାଳୁ କୋଦଣ୍ଡଧାରୀ ।

(କ୍ରମେ ଅଦୃଶ୍ୟ ହେଲେ)

ସୀତା—ମା ପତିତପାବନୀ ଗଙ୍ଗା—ଶାନ୍ତିମୟୀ କୋଳକୁ ଏ ଲାଞ୍ଛିତାକୁ ନେ ମା (ଡେଇଁ ପଡିଲେ)

ପାର୍ବତୀ—(ସୀତାଙ୍କୁ ଧରି ଉଠିଲେ) ନିଜକୁ ନିଜେ ରକ୍ଷି ନ ପାରି କଣ କରୁଚ ମା—କାର୍ଯ୍ୟ ଯେ ତମର ସରିନାହିଁ ।

## ପଞ୍ଚ ପତନ

## ୮ମ ଦୃଶ୍ୟ

ସମୟ—ସନ୍ଧ୍ୟାପରେ ବାଲ୍ମୀକ କୁଟୀର ବାରଣ୍ଡା (ଲବ ଓ କୁଶ ଗାଉଚନ୍ତି, ବାଲ୍ମୀକ ବସି ତାଳ ଦେଉଚନ୍ତି ମଝିରେ ମଝିରେ ସୁର ଧରୁଚନ୍ତି)

ଶ୍ରୀସୀତାପତି-ଯତିମତି ରଞ୍ଜନ; ଭଞ୍ଜନ ମଣ୍ଡିବର ଧନୁ—
ପୀତାମ୍ବରଧର, ଭକତ ଚିତ୍ତଚୋର, କିଶୋର ଶ୍ୟାମଳ ତନୁ—
ଅନୁପମ ଉତ୍ତମ, ଗୌତମୀ ପାବନ ଶ୍ରୀରାମ ନାମ କାମଧେନୁ,
ପୁଷ୍ପ ବିଭୂଷଣ, ବଧୂଷଣ ବନ୍ଧିତ, ପରିଗୃହ ଲକ୍ଷ୍ମଣ ହନୁ,
ବାଲ୍ମୀକ ନାୟକ, ଶୋଭିତ ଶାୟକ ମୁକ୍ତିଦାୟକ ପଦ ରେଣୁ
ଶାନ୍ତ ନିକେତନ, ରବିକୁଳ କେତନ, ଚେତନ କବିପ୍ରାଣ ବେଣୁ,

ବାଲ୍ମୀକ--(ତନ୍ମୟତା ଭଙ୍ଗିଗଲା କହିଲେ) ହୁଁ ଆଉ ଥରେ ଶାନ୍ତ ନିକେତନ........ବେଣୁ (ସମସ୍ତେ ବୋଲିଲେ) ହୁଁ-- ବୁଝିପାରୁଛ ତ ?

କୁଶ--ହିଁ ଅର୍ଥ, ମୁଁ କହିବ ବାବା ?

ଲବ--ମତେ ଆସିବ ବାବା--ମୁଁ କହିବ ଆଗ ।

ବାଲ୍ମୀକ--ଆଜ୍ଞା କହ ।

ଲବ--ସୀତାପତି ଯେ ଶ୍ରୀରାମଚନ୍ଦ୍ର--ସେ ପତି ଯେ ମୁନିମାନଙ୍କର ମନକୁ ରଞ୍ଜନ କରନ୍ତି--ଆଉ ମିଏ ସମସ୍ତଙ୍କ ବର ଯେ ଶିବ ତାଙ୍କ ଧନୁକୁ ଭାଙ୍ଗିଚନ୍ତି ।

କୁଶ--ଶିବ ପରା ସବୁଠୁ ବଡ଼ ଦେବତା ବାବା—ତାଙ୍କ ଧନୁକୁ ଶ୍ରୀରାମଚନ୍ଦ୍ର ଭାଙ୍ଗିଲେ କେମିତି ?

ଲବ—ସେମିତି, ସେ ଦିନ ଯେ ସୀତା ବିବାହ କଥା ବାବା କହୁଥିଲେ ଭୁଲିଗଲୁଣି ନା ?

କୁଶ—ଆରେ, ଭାଙ୍ଗି ନାହାନ୍ତି ବୋଲି କଣ ମୁଁ କହୁଚି ? ଦେବତାମାନେ ପରା ଆମ ମଣିଷଙ୍କ ଠାରୁ ବଳୁଆ—ତାଙ୍କ ଧନୁକୁ କେମିତି ଭାଙ୍ଗିଲେ ନା—ସେ ଦିନ ତ ବେଳ ନହୋଇ ଯାଇଥିଲା, ଆଉ ପଚାରି ପାରି ନାହିଁ ।

ଲବ—ସେ ଯିନା ବଳୁଆ ଆଉ ସବୁ ମଣିଷଠୁ, ଆଉ ଆମ ଭାରତ ଲୋକଙ୍କଠୁ କଣ ବେଶି ବଳୁଆ କି ?

ବାଲ୍ମୀକ—ନାହିଁ—ନାହିଁ—ଆମ ଭାରତର ଲୋକ ପରା ମନ୍ତ୍ର ଆଉ ହୋମରେ ତାଙ୍କୁ ବଶ କରନ୍ତି ।

କୁଶ—ବ୍ରାହ୍ମଣ ଆଉ ଋଷିମାନେ ଯିନା କେବଳ ମନ୍ତ୍ର ହୋମ କରନ୍ତି ।

ଲବ—ଏସୁଁ—ଯେଉଁ ଜାତି ନିଜ ଧର୍ମକୁ ଜଗି ଚଳନ୍ତି—ଦେବତା କ'ଣ ତାଙ୍କ କଥା ମାନନ୍ତି ନାହିଁ କି ?

କୁଶ—ହୁଁ ତାହେଲେ ଆଉ କଏ କାହିଁକି ଭାଙ୍ଗି ପାରିଲେ ନାହିଁ ?

ବାଲ୍ମୀକ—ଦେବତାଙ୍କୁ ମଣିଷ ବଶ କରିପାରେ ବୋଲି ପୁଣି ମଣିଷର ସେଥିପାଇଁ ତପବଳ ତ ଦରକାର ?

ଲବ – ରାମଚନ୍ଦ୍ରଙ୍କର ତପ ବଳ ସବୁଠାରୁ ବେଶି ଥିଲା ।

କୁଶ – ହଁ, ସେ ତାଡକା – ବାଳୀ ଆଉ ରାବଣ ପରି ବୀରଙ୍କୁ ମାରିଥିଲେ ।

ଲବ – ଏ ଗୁଡ଼ାକରେ କଣ ବୀରପଣିଆ ଫୁଟିଛି ତାଙ୍କର, ତାଡ଼କା ତ ମାଇକିନାଟେ – ଆଉ ବାଳୀ ଗୋଟେ ମାଙ୍କଡ଼, ତାକୁ ଫେରେ ଲୁଚିକରି ମାରିଲେ ।

ବାଲ୍ମୀକ – ନା, ବାବା – ପିଲାଲୋକ ତମେ – ଶ୍ରୀରାମଚନ୍ଦ୍ରଙ୍କୁ ଚିହ୍ନି ନା – ତାଙ୍କ ଚରିତକୁ ଏମିତି ବିଚାର କରାଯାଏ ନା ।

କୁଶ – ହଁ, ଯେତେହେଲେ ସିଏ ଅଯୋଧ୍ୟାର ମହାରାଜା, ସମୁଦ୍ରରେ ବନ୍ଧ ବାନ୍ଧିଥିଲେ ।

ଲବ – ଆମେ ତ ଗୋଟେ ଶର ମାରିଲେ ସମୁଦ୍ର ବାଟ ଛାଡ଼ିଦେବ ।

କୁଶ—ଆଉ ସେଇ ପଥରକୁ ଯେ ମାଇକିନା କରିଦେଲେ, ଆମିବନା ଥିଲେ ? —ବାବା—ହଁ—ଏତେବେଳକୁ ଲବର ଆଉ ପାଟି ଫିଟିବନି ?

ଲବ—ଆଉ ସେ ତାଙ୍କ ରାଣୀଙ୍କୁ – ନା – ବାବା – ମନାକଲେ, ମୁଁ ଆଉ କହିବି ନାହିଁ ।

ବାଲ୍ମୀକ – ହଁ—ରାଣୀଙ୍କୁ ବଣକୁ ପଠାଇଲେ—

ଲବ—ଠିକ କରିନା—

କୁଶ—ଓହୋ, ଋଷିଘର ପିଲା ତୁ—ଭଲ ରାଜନୀତି ଜାଣିନୁ—ବଡ଼ ବେଳକୁ ରଜା ମହାରଜା ଖାଲି ଧାଇଁ ଆସିବେ ତୋ ପାଖରୁ ବିଚାର ନେବା ପାଇଁ – ହେଉଁ ପ୍ରଜାଙ୍କୁ ଟିକି ଖୁସି କରାଇବାକୁ ଇମିତି କଲେ ସିଏ—ଆଉ ଠକଲେ କଣ ? କଥାଟା ଫିଟାଇ କହିଥିଲେ—ରାଜମାତାମାନେ ସହଜେ ଛାଡଥାନ୍ତେ—କେତେ ଘାଣ୍ଟ ଚକଟ ହୋଇଥାଆନ୍ତା !

ବାଲ୍ମୀକ—ଆଚ୍ଛା ଲବ, ତୁମେ ଅଯୋଧ୍ୟାର ରଜା ହୋଇଥିଲେ
କଣ କରିଥାଅନ୍ତ ?
ଲବ – ମୁଁ—ମୁଁ ଆଗ ସେଇ ସୁମନ୍ତ ମନ୍ତ୍ରୀଙ୍କ ନିକାଲି ଥାଆନ୍ତି ।
କୁଶ—କରେ ସେ ବିଚାରର ଦୋଷ କଣ ?
ଲବ – କ ! ମନ୍ତ୍ରୀ ସେ-ରାଜାଘର ହାଲଚାଲ ଦେଖୁଥିଲା ? ଖାଲେଇ
କାନକୁହା ମନ୍ଥରାଟାକୁ ଉଆସରୁ ନିକାଳି ନଥିଲା କାହିଁକି ?
ବାଲ୍ମୀକ—ଆଉ କଣ କରିଥାନ୍ତ ?
ଲବ – ଆଉ କଣ କରିଥାନ୍ତି—ବଣକୁ ଯାଇ ଥିଲେ, ଆପଣଙ୍କୁ
ମନେ ମନେ ସୁମରଣା କରି ଏକା କାଣ୍ଡ ମାରିଥାନ୍ତି ସେ—
ସେ ରାବଣ—ଫାବଣ ସବୁ ମରି ଶୋଇଥାନ୍ତେ ।
କୁଶ—ହୁଁ-ଆଉ ଏ ଦୁର୍ମୁଖଙ୍କୁ ବୋଧହୁଏ ବନବାସ ଦେଇଥାନ୍ତୁ—
ଲବ—ହିଁ, ଦୂତ ମିଁ, ରଜାଙ୍କୁ କ'ଣ କୁହାଯିବ – କଣ କୁହା
ନଯିବ--ବୁଝି ବିଚାରି ଖବର ନ ଦେବ କାହିଁକି ?
ବାଲ୍ମୀକ--ଆଚ୍ଛା, କୁଶ--ହଁ ଠିକ୍ କଥା ମନେପଡ଼ିଲା--ତମେ ମତେ
ସେ ଧନୁର୍ବେଦର ପରୀକ୍ଷା କେଉଁଦିନ ଦେବ ?
କୁଶ--ଯେଉଁଦିନ ଇଚ୍ଛା ଆପଣଙ୍କର--
ଲବ--ନାଇଁ ବାବା--କାଲି ଦେଖିନ୍ତୁ ? ହୁଁ, ନିଆଁ, ପାଣି, କୁହୁଡ଼ି
ବରଷାଇବା ଆଉ ପାଣିକି ଗୃହିଁ ଉପରକୁ ଲକ୍ଷ କରିବା--
ଯେତେ ବତାଇ ଥିଲ ସବୁ ଶିଖିଲୁଣି ବାବା ?
ସୀତା--(ଭିତରୁ) ବାବା--ଆଜ୍ଞା ଠା' ହେଲାଣି ।
ଲବ—ମା' ଡାକିଲେଣି—ଆଜ ବାବା ବଡ ସୁଆଦିଆ ସୁଆଦିଆ
ପାଚିଲା ଆମ୍ବ, ଲିଚୁ କେତେ ଆଣିଛୁ ।
କୁଶ—ମୁଁ ଏକା ଗୁଡେ ପାଚିଲା କଦଳୀ ଆଣିଚି ବାବା ।
ବାଲ୍ମୀକ – ହଉ ଚାଲ ଦେଖି, ଆଜ କେମିତି ଭୋଜନ ଦେଉଚ ?

***

## ୪ମ ଦୃଶ୍ୟ

(ସୂର୍ଯ୍ୟ ବୁଡ଼ ଯାଉଥିଲେ—ବଣ ବାଟରେ—ଜଙ୍ଗଲ ପୁରୁଷଟିଏ ସାଥିରେ ତାର ସ୍ତ୍ରୀ – ପ୍ରକୃତ ଶୋଭା ଦେଖି ବିଭୋର ହୋଇ ଗୀତ ନାଚରେ ମାତି ଉଠିଚନ୍ତି)

[ଗୀତ]

ପୁରୁଷ—ବୁଡ଼ିଲା ରବି ଛବିକି ଚାହିଁ ସୁଷମାରାଣୀ ବନ୍ଦୁଚି ।

ସ୍ତ୍ରୀ—ସେ ପଟେ ନୀଳ ଆକାଶ, କଳା ନୋଳ ପଟେ ବାନ୍ଧିଚି ।

ପୁରୁଷ—ଚାହାଁ ସନ୍ଧ୍ୟା—ଚାହାଁଟି ଦଣ୍ଡେ ।

ସ୍ତ୍ରୀ—ଏ ପାଣିଧାର ପରି ବାଦଲ ଖଣ୍ଡେ

ପୁରୁଷ—ସେ ମୁଣ୍ଡେ କେ ହରଣୀ ଲୁଣ୍ଡେ – କାଣ୍ଡଟେ ଯେମିତି ବାନ୍ଧିଚି ।

ସ୍ତ୍ରୀ—ଇନ୍ଦ୍ର ରାଜା – ପୁଅ ପରିକା-ଦିଶୁଚି ଏକା,

ପୁରୁଷ—ମାଥେ ଧୋବଜରି ପାଗଟେକି ପିନ୍ଧିଚି ?

ସ୍ତ୍ରୀ—ପକ୍ଷୀପରି ଯାଆନ୍ତେ ଉଡ଼ି, ମେ ରାଇଜେ ଏ ବଣ ଛାଡ଼ି—

ପୁରୁଷ—ସୁଆଦିଆ ଏ ଫଳମୂଳ ବାସନାଫୁଲ ମାୟାରେ ପଡ଼ି ଛନ୍ଦିଚି । (ଉଭୟେ ଚାଲିଗଲେ)

(ବଣର ଆଉ ଏକ ପାର୍ଶ୍ୱର ଦୃଶ୍ୟ)

(ସୀତାଙ୍କ ବିରହରେ ଶ୍ରୀରାମ ଚେତା ହରାଇ ପଡ଼ିଛନ୍ତି)

ସୀତା – (ମୁହଁକୁ ଆଉଁସୁଛନ୍ତି ଶ୍ରୀରାମଙ୍କର) ହାୟ ଭାଗ୍ୟ, ଅଯୋଧ୍ୟାର ମହାରାଜ, ଫୁଲ ବିଛଣାରେ ଯାହାକୁ ନିଦ ଲାଗେନା, ସେ ଆଜ, ଏ ହତଭାଗିନୀର ବିରହରେ ଏହି ବଣ ଭୂଇଁର କଣ୍ଟା

ନଷ୍ଟାରେ ପଡ଼ିଛନ୍ତି—ଆହା--ସେଇ କଅଁଳ ଗୃହମୁହଁ କ
କଳା ପଡ଼ିଗଲାଣି--ଯାହାହେଉ ମୋର ମରଣ ଆଗରୁ ଥରେ
ଯେ ଦେଖିବାକୁ ପାଇଲି ।

ବାସ--(ପାଣିଆଣି) କଣ କରୁଚ ଭଉଣୀ--ନାଅ ଏଇ ପାଣି ମହାକ
ଆଗ ମୁହଁରେ ଦିଅ ତ ?

ସୀତା--(ପାଣି ଦେଉଁ ଦେଉଁ) କେଡ଼େ ସ୍ୱାର୍ଥପର ମୁଁ ସତେ, ଆଗ
ଚେତା ନ କରାଇ ମୋର ଦେଖିବା ଆଶା ମେଣ୍ଟାଇ ବସୁଚ ।

ବାସ—(କାନ ଫୁଙ୍କୁଥିଲା) ତମ ସ୍ୱାମୀ କଣ ହେଲେଣି ଏ ଭଉଣୀ ?

ସୀତା – କପାଳ କଣ ଦେଖୁଚ ସହି ?

ବାସ – ଏଇ ଚେତା ଆସିଯିବ ।

ସୀତା – ତେବେ ମୁଁ କଣ ଚାଲିଯିବ ?

ବାସ—ଯିବା ଉଚିତ--ନଚେତ ଇମିତି ଅବସ୍ଥାରେ ତମଠି-ଆଖି
ପକାଇଲେ, ସେ ଛାଡ଼ି ଦେବେ ନା ତୁମେ ଯାଇ ପାରିବ ?

ସୀତା--ନାଇଁ, ପବିତ୍ର ରଘୁକୁଳରେ କଳଙ୍କ ହେବ ପୁଣି ଭଉଣୀ--
ପତର ଶେଯଟିଏ ସଜାଡ଼ି ରଖିଥାନ୍ତି--ଚେତାହେଲେ ଟିକିଏ
ବସନ୍ତେ କି ଶୁଅନ୍ତେ ।

ବାସ – (ପୁଣି ପାଣିଦେଇ ମୁହଁକୁ ପୋଛୁଥିଲା) ଭଗବାନ ! କି
ବିଗ୍ରହ ତମର ?

ସୀତା – ( ସ୍ୱାମୀଙ୍କ ପାଦଧୂଳି ନେଇ ) ସ୍ୱାମୀ-ଦେବତା – ଏ
ଅବସ୍ଥାରେ କି ତମର ସେବା ଟିକିଏ କରି ପାରିଲି ନାହିଁ--
ହଉ ତମର ରାଜଧର୍ମ ରକ୍ଷାହେଉ । (କାନ୍ଦି କାନ୍ଦି ପ୍ରସ୍ଥାନ)

ଶ୍ରୀରାମ--ସୀତା, ସୀ--ତା ।

(ବାସନ୍ତୀ ଚାଲିଗଲେ)

ଶ୍ରୀରାମ—କେଉଁଆଡ଼େ ଗୁଲିଗଲ ପ୍ରିୟେ—ନା ମୁଁ ସ୍ୱପ୍ନ ଦେଖୁଥିଲି ।
ସୀତା – ଏଇ ବଣ ଜଙ୍ଗଲରେ ବାଘ, ଭାଲୁ , ଅସଂଖ୍ୟ ହିଂସ୍ର ନଗରରେ
ଅଛନ୍ତି ସତ, ମାତ୍ର ଏମାନେ ସହରର ଖଳ ସମାଲୋଚନା
ଜାଣନ୍ତି ନାହିଁ—ଏଠାରେ ଦୁଷ୍ଟ ପ୍ରଜାର ଭୟ ନାହିଁ—
ଏଭଳି ଏକୁଟିଆ ଜାଗାରେ ଦେଖା ଦେଇ କୁଆଡ଼େ
ଗଲ ପୁଣି କ୍ଷମା ବି ମାଗିବାକୁ ତର ସହିଲ ନାହିଁ ସୀତା—
ସୀତା, ମତେ କ ଅଭିମାନରେ ଲୁଚିଗଲ ? ଆଁ, କଣ
କରୁଚି-ମୁଁ ଅଯୋଧ୍ୟାର ଜଙ୍ଗଲ ଏ – ଯେତେ ସରଳ ହେଲେ
ମଧ୍ୟ ଅଯୋଧ୍ୟାର ପ୍ରଜା ଏଇ ହିଂସ୍ର । ଆଉ ଯେବେ ସହରର
କେହି ଲୋକ ମୋର ଏ ଅବସ୍ଥା ଦେଖେ ; ନା–ନା
ଅଯୋଧ୍ୟାର ମହାରାଜ ଏତେ ଦୁର୍ବଳ ନୁହେଁ—ତାର
ସିଂହାସନର ବିଚାର କଦାପି ଭୁଲ ନୁହେଁ "ଆଦେଶ ଆଉ
ପୁଣି ଫେରାଇ ନେବାର ନୁହେଁ ।"

(ସ୍ତମ୍ଭିତ ହୋଇ ଠିଆ ହୋଇଥିଲେ)

## ପଞ୍ଚ ପତନ

.= • • • =

# ତୃତୀୟ ଅଙ୍କ
## ପ୍ରଥମ ଦୃଶ୍ୟ

ଶ୍ରୀରାମ—ମହାରାଣୀଙ୍କର କନକ—ପ୍ରତିମାକୁ ଯଜ୍ଞର ଦେବତାଏ ସ୍ୱୀକାର କରିଛନ୍ତି ନା କ'ଣ ଦେହରକ୍ଷୀ ?

ଦେହରକ୍ଷୀ—ହଜୁର—ହେଲେ ସୁନାପ୍ରତିମା! କଣ କଥା କହିବ ? ଆମ ଉଆସ ଲୋକ – ଆଉ ଗାଁକର ବାକର ସବୁ ଆଜ୍ଞା ।

ଶ୍ରୀରାମ—ଏଇ କନକପ୍ରତିମାରେ ସନ୍ତୋଷ ହୁଅନ୍ତି ନା ?

ଦେହରକ୍ଷୀ – କୁଆଡୁ ହେବେ । ହଜୁର—ଏ ଯଜ୍ଞ ଉଚ୍ଛବକୁ ମହାଦେଈ ଉଆସରେ ଥାଆନ୍ତେ – ଉଆସ ଖାଲି ପୂରି ଉଠୁଥାଆନ୍ତା । ଆଉ ଏତେଲୋକ ଥାଇ କରି କଣ ଖାଲି ଯେମିତି ଦରମଲା ପ୍ରାଣୀ ଗୁଡ଼ାଏ – କାହାରି ପିଣ୍ଡରେ ପ୍ରାଣ ନାହିଁ ।

ଶ୍ରୀରାମ – କିନ୍ତୁ କାମସବୁ ଠିକମତ ଚାଲିଚି ତ ?

ଦେହରକ୍ଷୀ – ହଜୁର, ପାଣି, ପବନ, ନିଆଁ, ନିର୍ଜୀବପର ସବୁ ନିଜ ନିଜ କାମକରି ଯାଆନ୍ତି – ଯେମିତି ଆଉ ଅକଲ ଖଟାଇ କାମ କେହି ଗୋଟାଏ କରିବାର ଦିଶୁଚି ?

ଶ୍ରୀରାମ – ମହାଦେଈ ସମସ୍ତଙ୍କର ଅକଲ କଣ କାଢ଼ି ନେଇଚନ୍ତି ନା ?

ଦେହରକ୍ଷୀ – ହଜୁର ନିଜ କଥାରୁ ତ ବୁଝୁଥିବେ ।

ଶ୍ରୀରାମ – ଆଉ ପ୍ରଜା ସବୁତ ଉତ୍ସବରେ ଯୋଗ ଦେଉଛନ୍ତି ?

ଦେହରକ୍ଷୀ – ଶ୍ରୀହଜୁରଙ୍କ ହୁକୁମ ତଳେ ଟେକେଇବାକୁ ମୁଣ୍ଡ କିଏ ? ହେଲେ ଗୁମୁ କାମରେ ଯେମିତି ଗୋଟାଏ ସରସତା ନାହିଁ ।

ଶ୍ରୀରାମ – ତେବେ ?

ଦେବଦରକ୍ଷୀ – ତେବେ କଣ ? ମହାଦେଈ ଯଦି ଏ ପଞ୍ଚ ଉତ୍ସବକୁ ବର୍ଜନ କରନ୍ତେ ।

ଶ୍ରୀରାମ – ହାଃ – ହାଃ-ପାଗଳ ନା କ'ଣ ? ମହାଦେଈ ପଞ୍ଚ ଉତ୍ସବକୁ ବର୍ଜନ କରିବେ ? ଅଯୋଧ୍ୟା ରାଜସିଂହାସନର ବର୍ଷର— ବର୍ଷର ଉପରେ ପୁଣି ବର୍ଷର ଥାଏ ଆଉ ?

ଦେବଦରକ୍ଷୀ—ନା, ଶ୍ରୀହଜୁର ବର୍ଷରଲେ ନା—

ଶ୍ରୀରାମ—କମିତ, ବୁଝ୍ନା ତମେ ଯେମିତ ଶ୍ରୀହଜୁରଙ୍କ ଦେହରକ୍ଷୀ, ଶ୍ରୀହଜୁରେ ପରା ସେମିତ ସିଂହାସନର ମାନ ସମ୍ମାନ ରକ୍ଷୀ, ଜଣେ ସେବକ ମାତ୍ର ! ଅଯୋଧ୍ୟାର ରାଜଅଙ୍ଗରକ୍ଷୀ ଓ ରଜା ଭିତରେ ତଫାତ କଣ ? କେବଳ ଏଇ ବେଶ ପୋଷାକ ଧିନା । ରାଜଦତ୍ତ ଖଞ୍ଜା ବୃତ୍ତି ଭୋଗକରି ଦାୟିତ୍ୱ ତୁଲାଏ ଯେମିତ କର୍ମଚାରୀ ଜଣେ, ରଜା ସେମିତ ପ୍ରଜାଦତ୍ତ ମାନସମ୍ମାନ ଉପାଧି ଗୁଡ଼ାଏ ମୁଣ୍ଡରେ ଲଦି ସିଂହାସନର ଦାୟିତ୍ୱ ତୁଲାନ୍ତି । ରାଜାକାଏ ଅଯୋଧ୍ୟାରେ – ପ୍ରଜାର ସର୍ବଶ୍ରେଷ୍ଠ ସେବକ ତ ରଜା । ପ୍ରଜାର ମଙ୍ଗଳ ଶପଥ ନେଇତ ଅଭିଷେକ ହୁଏ ତାର, ତେବେ ଅଯୋଧ୍ୟାର ସିଂହାସନତ ପ୍ରଜାର ସିଂହାସନ – ସେଇ ପବିତ୍ର ସିଂହାସନର ମର୍ଯ୍ୟାଦାକୁ ଦଳନେଇ ମହାଦେଈଙ୍କୁ ଫେରାଇ ଆଣିବାର ଆଦେଶ କପରି ଦେଇପାରେ – ସେଇ ସିଂହାସନର ଜଣେ ଚାକର ଏଇ ରାଜା ।

ଦ୍ୱାରୀ—( ପ୍ରବେଶ ଅଭିବାଦନ କରି ) ରାଷ୍ଟ୍ରଦୂତ, ଶ୍ରୀଗୁରୁଙ୍କ ଦର୍ଶନ ଅପେକ୍ଷାରେ ।

ଶ୍ରୀରାମ—ଯଥୋଚିତ ସମ୍ମାନ ସହିତ ନେଇଆସ ।

ଦ୍ୱାଃସ୍ଥ – (ଅଭିବାଦନ କରି ଚାଲିଗଲା)

ଦୁର୍ମୁଖ – (ଅଭିବାଦନ କଲେ)

ଶ୍ରୀରାମ – କି ସମ୍ବାଦ ଦୂତ ;

ଦୁର୍ମୁଖ – ସବୁ ଶେଷ ମହିମା । ଭରତ, ଶତ୍ରୁଘ୍ନ, ଅଯୋଧ୍ୟାର ଦୁଇଟିଯାକ ଉଜ୍ଜ୍ୱଳ ରତ୍ନ ଆଜି ନିଭିଗଲେ—ଆଉ ଲକ୍ଷ୍ମଣ ମୂର୍ଚ୍ଛାରେ ସଙ୍କଟାପନ୍ନ –

ଶ୍ରୀରାମ – ଆଁ !! କଣ କହିଲ ? ମୁଁ ଯେ ବିଶ୍ୱାସ କରିପାରୁ ନାହିଁ ।

ଦୁର୍ମୁଖ – ଅଯୋଧ୍ୟାର ରାଷ୍ଟ୍ରଦୂତ କି ମିଥ୍ୟା କହେ ମହିମା ?

ଶ୍ରୀରାମ--ଅନ୍ତରୀକ୍ଷ ପବନ, ଏକାଦଶ ସୂର୍ଯ୍ୟ, ଆଉ ରୁଦ୍ର ସମାଜର ବଳକୁ ଉପହାସ କରେ ଯେଉଁ ରଘୁକୁଳ ବୀର, ତାର ମୂଳ ଶକ୍ତି ଆଜି ପରାସ୍ତ ! ତାର ଯେ ସେନାନାୟକ ଦୁହେଁ ପୁଣି ମୃତ !! ରଘୁ କୁଳର ଇତିହାସରେ ଏ ଗୋଟାଏ ନୂଆ ଅଧ୍ୟାୟ ? ସତ୍ୱର ତତଲା ଲୁହର କରାମତି; କିଏ ତେବେ ଏଇ ବିଶ୍ୱବିଜୟୀ ବୀର ?

ଦୁର୍ମୁଖ – ସାମାନ୍ୟ ବାଳକ ଦୁଇଟି ପ୍ରଭୁ ! ଓଃ କି ଅଦ୍ଭୁତ ରଣ-କୌଶଳ ସେମାନଙ୍କର; ସୈନ୍ୟ ନାହିଁ, ରଥ ନାହିଁ, ଅଶ୍ୱ ନାହିଁ, ନିଜେ ନିଜେ ସୈନ୍ୟ – ନିଜେ ନିଜର ସେନାପତି ସେମାନେ ।

ଶ୍ରୀରାମ—ସାମାନ୍ୟ ଦୁଗ୍ଧପୋଷ୍ୟ ଶିଶୁ ଦୁଇଟା ଏତେବଡ଼ ଶକ୍ତିଶାଳୀ, ନିଜେ ନିଜର ସେନାପତି ସେମାନେ, ଆଚ୍ଛା ସେମାନେ ଆମର ଶତ୍ରୁତା କରିବାର କାରଣ ?

ଦୁର୍ମୁଖ—ଖେଳୁଖେଳୁ ଅଶ୍ୱକୁ ଆମର ବାଟରେ ପାଇ ବାନ୍ଧି ରଖିଲେ ତୁମୁ ଆମର ସେନା ପହଁଞ୍ଚନ୍ତେ, ବନାୟୁଦ୍ଧରେ ଅଶ୍ୱ ଦେବାକୁ ମନା କଲେ—ପିଲାବୋଲି ସୈନିକମାନେ ଯୋର ନକରି ଶତ୍ରୁଘ୍ନଙ୍କୁ ଖବର ଦେଲେ, ତାଙ୍କର କଥା ମଧ୍ୟ ମାନିଲେ ନାହିଁ ।

ଶ୍ରୀରାମ—ହଁ—

ଦୁର୍ମୁଖ--ତାର ପର ଯୁଦ୍ଧ ହେଲା-ଇଃ-ଏବେ ବି ମୋର ଲୋମମୂଳ ଟାଙ୍କୁର ଉଠୁଚି ମହିମା--ଏମିତି ଯୁଦ୍ଧ ମୁଁ ଦେଖିନାହିଁ-- ଶୁଣି ନାହିଁ । ପଲକ ଭିତରେ ଅଯୋଧ୍ୟାର ବିରାଟ ସେନାକୁ ଛିନଛତ୍ର କରି ଦେଲେ- ଯହିଁଇଚ୍ଛା ତହିଁ କଦଳୀ ବଣକୁ ହାତୀ ପଶି ଭାଙ୍ଗିଲାପରି, ଆମର ସୈନ୍ୟମାନଙ୍କୁ ମାଡ଼ମକଚି ଗଲେ । ନିଆଁ, ଧୂଆଁ, କୁହୁଡ଼ି, ମେଘରେ ଯୁଦ୍ଧଭୂଇଁ ଢାଙ୍କି ହୋଇଗଲା କଥା କହୁଁ କହୁଁ ଭରତ ଶତ୍ରୁଘ୍ନ ଟଳି ପଡ଼ିଲେ ।

ଶ୍ରୀରାମ--ହଁ, କହନ୍ତୁ ତାର ପର କଣ ହେଲା ?

ଦୁର୍ମୁଖ—ଦଇବଯୋଗକୁ ଲକ୍ଷ୍ମଣଙ୍କ ସେନା ଆସି ମିଶିଗଲେ, କିଛି ସମୟ ଲଢିଲେ ସେ—ହେଲେ ଶେଷକୁ ସେଇ ଦଶା ।

ଶ୍ରୀରାମ—ହୁଁ ଅଯୋଧ୍ୟାର ସୈନ୍ୟ କେହି ପଛଘୁଞ୍ଚା ଦେଇଚନ୍ତି ?

ଦୁର୍ମୁଖ—ପଛଘୁଞ୍ଚା କି ଅଯୋଧ୍ୟାର ଜାତକରେ ଅଛି ମହିମା ? ଏ ପର୍ଯ୍ୟନ୍ତ କପିକେତନ ଉଡ଼ାଇ ଲକ୍ଷ୍ମଣ ଲଢୁଚନ୍ତି ।

ଶ୍ରୀରାମ—ତେବେ ସମସ୍ତ ଆଶା ନିଭିନାହିଁ, ଚାଲନ୍ତୁ ଶୀଘ୍ର ଯିବାପାଇଁ ରଥ ପ୍ରସ୍ତୁତ କରିବାକୁ କହନ୍ତୁ ।

( ଦୁର୍ମୁଖ ପ୍ରସ୍ଥାନ )

ଦେବରକ୍ଷୀ – ଯାହା କହିଲେ ମଣିମା – ମହାଦେବଙ୍କ ଭଳି ଲୁହରୁ
ତଆର ଏ ଦୁହେଁ କଏ ହେବେ !
ଶ୍ରୀରାମ—(ଯାଉଁ ଯାଉଁ କହୁଥିଲେ) – ହଁ – ଯଥା ରାଜଲକ୍ଷ୍ମୀର ଭଳି
ଆଖିପାଣି ସହିତ ଅଯୋଧ୍ୟା ସିଂହାସନ ବସ୍ତ୍ରର ଏ ସୂଚ !

## ପଞ୍ଚ ପତନ

## ୨ୟ ଦୃଶ୍ୟ

( ରାଜପଥ – ନିକଟ ଅଗଣା )

ନେପଥ୍ୟେ – ନିକଟରେ ଅସଂଖ୍ୟ ସୈନିକମାନଙ୍କର ଉଦାତ୍ତ
କଣ୍ଠସ୍ୱର—ଜୟ ଶ୍ରୀରଘୁପତି—ରାଜା ଶ୍ରୀଶ୍ରୀରାମଚନ୍ଦ୍ର କ ଜୟ ।

( ଗୀତ )

ଯେ ଦେଶର ପୁଅ ରୁଦ୍ରଧନୁ ଭାଙ୍ଗି କରିଚ ଜୁର—
ସମୁଦର ଡେଇଁ କରିଚ ଦୁଖଣ୍ଡ ଇନ୍ଦ୍ରଜିତର ଶିର ।
ଜୟ ଶ୍ରୀରାମଚନ୍ଦ୍ର କ ଜୟ !!

(ଆଗେ ଜଣେ ବୋଲୁଚ—ପରେ ଅସଂଖ୍ୟ ସୈନ୍ୟ ବୋଲୁଚନ୍ତି । ଅଗଣା ଭିତରକୁ ଧାଇଁ ଧାଇଁ ଆସୁଚ ଗୋଟିଏ ଦରବୁଢ଼ା – କାନରେ ହାତ ଦେଇ – ଇଲେ ମାଲେ – ମୋ ବୋପାଲେ – ମା – ଇଲେ – ଇଲେ—ଏ ବାଣପଟ କବାଟଟା ଝଟ କଲ ଦେଲେ – ସବାଖାଇ – ମୁଁ ମରିବାଯାଏ ଏ ଡଙ୍କୁଣୀର କଣ୍ଠା—

(ଅନ୍ତ ଭସ୍ବର ଅଭିନୟ—ପୁଣି ଶୁଭିଲା)

ଦର୍ପିତ ଅସୁର ଶାସନ ଟାଣ
ଟାଳିବ ଯେ ଦେଶ ବୀରର ବାଣ

(ଦରବୁଢ଼ୀ ସ୍ତ୍ରୀଟି ଆସିଲା)

ସ୍ତ୍ରୀ—ମ—ମତେ ଏତେ ଡରୁଚ କଅାଁ ମ—ମୁଁ କଣ କଲିକ ?

(ପୁଣି ଶୁଭିଲା)

ଯେ ଦେଶର ରାଜଦଣ୍ଡକୁ ଡ଼ର ପଛଘୁଞ୍ଚା ଦିଏ କାଳ ।

ପୁ—ତୋ ଯୋଗେ ସତ୍ୟାନାଶ ହେଲି ମୁଁ; ସ୍ୟାପ୍ କରିଲି ଦାଣ୍ଡପଟ ଦରଜାଟା—ଦେଇଆ ଯା ।

ସ୍ତ୍ରୀ—ଏଁ କଣ ଘର ଭିତରକୁ ଆମ୍ଭି ତମକୁ ଟାଣି ନେଉଚନ୍ତି ନା କଣ ? (ପୁଣି ଶୁଭିଲା)

ସେ ଦେଶର ବୀର ସଇନ ଆଜ
ଶିଶୁର ସମରେ ପଡ଼ିଚ ଭାଜ—

ପୁ—ବୁଝିଲୁ—ଓଲା—ଦିନ୍ଟା ଅସୁର ଛୁଆ ପରି—ଆଇଚନ୍ତି ଲୋ—ଅସୁରଛୁଆ ଦିଟା—ଖାଲି ଗଜା-ଟେଣ୍ଡା—ମରଦଙ୍କ ରକତ ଶୁଦ୍ଧା ଶୋଷି ନେଉଚନ୍ତି ।

ସ୍ତ୍ରୀ—ଏସୁଁ—ମୁଁ କହିଲି—ଏ ଯଜ୍ଞ ଉତ୍ସବକୁ—ରଜାଙ୍କ ଜୟଗୀତ ଗାଇ ସବୁ ଲୋକ ବୁଲୁଚନ୍ତି ।

ପୁ—ଇଲୋ—ନା ଲୋ—ରାଣ୍ଡି—ହେଇ—ହେଇ ଶୁଣ ଫେର—

( ଗୀତ )

ଏ ମହା ଲାଞ୍ଛନା ସହିବ କଏରେ କରେ ଥାଉଁ କରବାଳ ।

ସ୍ତ୍ରୀ—ଦିପଟ—କବାଟତ ଦେଇଚ—ଆଉ ଏମିତ ଥରୁଚ କାହିଁକ ?

ପୁ—ଇଲୋ—ଇଲୋ ମୋତେ ଧର—ନ ହେଲେ ଦେ—ମୋତେ ଏଠି ବାନ୍ଧି ଦେ—ଏ ରାଣ୍ଡି ।

ସ୍ତ୍ରୀ—ମ ? ଯୁଦ୍ଧକୁ ଯାଉଚନ୍ତି ଫେର ଏଇ ଆମ ମଣିଷ ତ ?

ପୁ—ହଁ ଲୋ—ତୋର କଣ ହେଉଚି କ ? ଦେଖିଲୁ—ମୋର ତ ବଳ ବହପ ଗଲା—ଟାଳ ମୁଁହ ସବୁ ଠକରା ପଇଲା—ଏଣିକ ମୁଁ ମଲେ—

ସ୍ତ୍ରୀ—(ନେପଥ୍ୟେ) ବଜ୍ର ତୋଫାନ ଶକତ ଧର,
ଆସରେ ସମରେ ଅରି ସଂହାର ।
ଶିଶୁମେଧେ ଅଶ୍ୱମେଧ ପୂର୍ଣ୍ଣାହୂତି କରନାଇଁ ଆଜ ତର
କପିକେତନ—ଉଚ୍ଚା ରହୁ ;
ଶତ୍ରୁ ଶକ୍ତି ଧ୍ୱଂସ ହେଉ,
ରାମ ରାଜୁତି—ଜୟଯୁକ୍ତ ହେଉ,

ବୁଢ଼ା—ଇଲୋ--ଦେ--ବାନ୍ଧ ଦେ ।

ସ୍ତ୍ରୀ—ମୋ ମାଲେ--ସିଏ ସବୁ ଯୁଦ୍ଧକୁ ଯାଉଚନ୍ତି—ତାଙ୍କର ଆଉ ଜୀବନ ନୁହେଁ, ଏଥିଲାଗି ମାଇପଙ୍କ ସାମନାରେ ଏତେ ଫୁଟାଣି—(ପୁଣି ଜୟଧ୍ୱନି ଶୁଭିଲା)

ବୁଢ଼ା—ଇଲୋ ହେ—ତତେ ନେହୁରା ହେଉଚି—ମୋ କଲିଜା ଶୁଖି ଯାଉଚି ମତେ ଟୋପେ--ପାଣି—ଦେ—ଆଉ କଣଟେ ଘୋଡ଼େଇ ଦେ ।

ସ୍ତ୍ରୀ—ଦଉଚି ଲୋ ମା ରାଣୀ—
ମାଇପ ପାଖରେ ଏତକ ତପ
ଦେଖ ଆଜ ଆମ ବୀରଙ୍କ ରୂପ

ପୁ—ଏ ବଜ୍ଜାତ ମାଈକନା—ରହ ।

ନେପଥ୍ୟେ—ଭାଇମାନେ ଏ ଯୁଦ୍ଧ ରାଜାର ଯୁଦ୍ଧ ନୁହେଁ—ଅଯୋଧ୍ୟା ରାଜାର ରାଜ୍ୟ ନୁହେଁ,—ଏ ପ୍ରଜାର ଯୁଦ୍ଧ--ପ୍ରଜାର ଡାକରା—ଅଶ୍ୱମେଧ ନିର୍ବିଘ୍ନରେ ପୂର୍ଣ୍ଣହେଲେ—

ପ୍ରଜାର ଶାସନ ଭାରତର ଗୃହଆଡ଼େ ଖେଳସିବ—କିନ୍ତୁ ଏଥିରେ ବାଧା ଲାଗିଲେ ରାବଣର ଲଙ୍କାକଣ୍ଟକ ଶାସନପରି ଯଥେଚ୍ଛାଗୃର ଶାସନ ଗୃଲିବ—

ପୁ—(ଥରୁଥିଲା—ସ୍ତ୍ରୀ—କାନଇ ଶୁଣୁଥିଲା) ମନେରଖ—ଆମ ଅଯୋଧ୍ୟାର ଗୌରବ କେତେ, ଆମର ପୁଣ୍ୟଶ୍ଳୋକ ମହାରାଜା—ଦଶରଥଙ୍କର ଦଶ ଦିଗରେ ଗୌରବ କେତନ ଉଡ଼ାଇଚ—ଆଜ ବର୍ତ୍ତମାନର ରାଜା ଶ୍ରୀରାମଚନ୍ଦ୍ରଙ୍କର ମହିମା କିଏ ନ ଜାଣେ—ପିଲାଦିନୁ ଯେ ରାକ୍ଷସମାନଙ୍କୁ ବଧକରି ତପୋବନରେ ଶାନ୍ତି ପ୍ରତିଷ୍ଠା କରିଛନ୍ତି—ଅସୁରର ଶାସନକୁ ଦଳି ସ୍ୱର୍ଗରାଜ୍ୟ ପ୍ରତିଷ୍ଠା କରିଛନ୍ତି ଯେ ନିଜର ସମସ୍ତ ସୁଖ ସୁବିଧାକୁ ଆମର ଏଇ ପ୍ରଜାର କଥାରେ ବଳି ଦେଇ ପାଟ ମହାଦେଈଙ୍କୁ ତ୍ୟାଗ କରିଛନ୍ତି—ସେଇ ପ୍ରଜାରଞ୍ଜନ ପୁଣ୍ୟବାନ ମହାରାଜା ଶ୍ରୀରାମଚନ୍ଦ୍ରଙ୍କର ମାନ ସମ୍ମାନ କଣ ଆମର ନ ଏ ଦେଶରେ, ଏ ପ୍ରଜାଙ୍କର ନୁହେଁ ? ସେଇ ସମ୍ମାନ ଉପରେ ଆଜ ଆଘାତ କରିଚନ୍ତି, ଦି'ଟା ନଗଣ୍ୟ ଜଙ୍ଗଲି ଶିଶୁ ; ଉଠ—ଉଠ ଭାଇ—ଏ ଅପମାନ, ଏ ଲାଞ୍ଛନା, ସହି ହେବ ନାହିଁ, ଗୃଲ—ଗାଅ—

ବଜ୍ର ତୋଫାନ ଝଙ୍କଡ ଝଡ଼—
ଆସରେ ସମରେ ଅରି ସଂହାର,
ଶିଶୁମେଧ—ଅଶ୍ୱମେଧ—ଡର ।

ପୁ—ଏ—ମନୁଆ ବୋଉ—ମନୁଆ ବୋଉ—ପାଣି—ପାଣି—ହେଇ ଆଇଲେ (ଚେତା ବୁଡ଼ିଗଲା)

ସ୍ତ୍ରୀ—ଏମୁଁ ଏମୁଁ ଇଏ କଣ ହେଲା ମା—(କାନଫୁଙ୍କି ପାଣି ଛାଟି—ଚେତା କରାଇଲା—କ୍ରମେ କଳ ଦୂରକୁ ଗଲା)

ପୂ—(ସ୍ତ୍ରୀକୁ କହିବାଲା) ନ୍ୟପ—ମଣିଷ--ବଞ୍ଚିଗଲା--ହେଁ--ଦେଖ ଲେ ବାପ--ଘର ଘର ପଶି ନେଇ ଯାଉଛନ୍ତି--ନେ--ଧରତ ମତେ—ସ୍ତ୍ରୀ ଲୋକ ଧରିଲା) ଗୃହ--ମୋ ଭିତରେ ଘରେ ବନ୍ଦେଇ ଦେ--(ଉଭୟେ ବାହାର ଗଲେ)

## ପଞ୍ଚ ପତନ

## ସପ୍ତମ ଦୃଶ୍ୟ

( ଯୁଦ୍ଧଭୂଇଁ )

ଦେହରକ୍ଷୀ—ଏଇ ମଣିମା, ଏଇ କମ୍ପି କେତନ ଆମର ନଇଁଗଲା ଇଃ--କ ଭୟଙ୍କର ନଆଁ ଅଜାଡ ହେଇ ପଡୁଛି ।

ଶ୍ରୀରାମ—ହୁଁ-ଆମ ପକ୍ଷରୁ କଏ ବର୍ଷା କଲା ?

ଦେହରକ୍ଷୀ—ଖାଟିଲା ନାହିଁ ମହାରାଜ--ହେଇ ସେ ସେ ପକ୍ଷରୁ ପୁଣି ପ୍ରଚଣ୍ଡ ପବନ ଆସି ଆମର ଏ ବର୍ଷାଗୁଡ଼ା ଉଡ଼ାଇ ନେଲା ।

ଶ୍ରୀରାମ—କିନ୍ତୁ ଆମର ସୈନ୍ୟମାନେ ତ ଶୃଙ୍ଖଳା ଭାଙ୍ଗୁ ନାହାନ୍ତି ।

ଦେହରକ୍ଷୀ—ଅଯୋଧ୍ୟାର ସୈନ୍ୟ ଯୁଦ୍ଧ ଭୂଇଁରେ ମରିଜାଣେ ମହାରାଜ—କିନ୍ତୁ ପଛଘୁଞ୍ଚା ଶିଖି ନାହିଁ ।

ଶ୍ରୀରାମ—ଏଇ ଯେ ଆମର ବ୍ୟୂହଭେଦ କରି ଅସଂଖ୍ୟ ସେନା କାଟି ଗୃହ ଆସୁଚନ୍ତି ସେଇ ଦର୍ପିତ ବୀରବାଳକ ନା ?

ଦେବରକ୍ଷୀ—ହଁ ମଣିମା—ସେଇମାନେ—ଇଃ—ପିଲା ବକଟେ ବକଟେ—କ ଆଶ୍ଚର୍ଯ୍ୟ ଯୁଦ୍ଧ କୌଶଳ ଏମାନଙ୍କର—ଧନ୍ୟ ସାବାସ ।

ଶ୍ରୀରାମ—ମିଂହ ଶିଶୁ ନଶ୍ଚୟ—ବଧାତାର ଅପୂର୍ବ ସୃଷ୍ଟି

ଦେବରକ୍ଷୀ-ଏଇଯେ ମଣିମା, ଅତି ନକଟରେ ହୋଇଗଲେ, ଆମର ସୈନ୍ୟ ସବୁ ଭାଙ୍ଗପଡ଼ୁଚନ୍ତି—କେହିଜଣେ ରୋକିବାକୁ ନାହିଁ ।

ଶ୍ରୀରାମ—ଯା କୁହ ବଣଶିଶୁ କଏ କାହିଁକି ରଘୁକୁଳର ଶତ୍ରୁ ହେବ । ଏଇଯେ ଦେଖିପାରୁଚ—କ ପ୍ରଚଣ୍ଡ ରଣଚଣ୍ଡୀ ମୂର୍ତ୍ତି-ପାଣି ମେଲାଇ ଆମର ସୈନ୍ୟଙ୍କୁ ଯେପରି ଗ୍ରେଷି ଦେଉଚନ୍ତି ।

ଦେବରକ୍ଷୀ—ମୁଁ କିଛି ଦେଖିପାରୁ ନାହିଁ ମଣିମା—ଭାବୁଚି ମହାଦେବଙ୍କର ତତଲା ଲୁହ ଏ ମୂର୍ତ୍ତି ଧରିଥିବ । ମଣିମା—(ଏହି ସମୟରେ ଗୋଟିଏ ଶର ଆସି ଦେବରକ୍ଷୀ ଦେହରେ ବାଜିଲା ସେ ତଳେ ପଡ଼ିଗଲା) ରକ୍ଷନ୍ତୁ ମଣିମା—ନିଜକୁ ରକ୍ଷା କରନ୍ତୁ ଏବେ ବି ସମୟ ଅଛି—ପାଟ ମହାଦେବଙ୍କୁ ଫେରାଇ ଆଣନ୍ତୁ । ଓଃ—ପାଣି ।

ଶ୍ରୀରାମ—(ପାଣି ବାହାର କରିବା ପାଇଁ ଶର ଯୋଖିଲେ ) ଓଃ ପାଣି ଟୋପାଏ ବି ଦେଇ ହେଲା ନାହିଁ । ଯାଅ—ବୀର; ଦାୟିତ୍ୱ ତମର ଶେଷଜୀବନ ପର୍ଯ୍ୟନ୍ତ ତୁଲାଇଚ—ଆଖି ପଲକରେ ଯେ ସାତ ସମୁଦ୍ର ଶୁଖାଇ ପାରେ—ଜଳନ୍ତା ସୂର୍ଯ୍ୟଙ୍କୁ ଶୀତଳ କରିପାରେ, ଅଣଚ୍ଛଷପବନକୁ ରୋକିପାରେ—ସେହି ରାମ ଆଜି କି ଦୁର୍ବଳ—ସାମାନ୍ୟ ଶିଶୁର ହାତରେ କି ଲାଂଛନା । ରଥ, ଅଶ୍ୱ, ସାରଥି—ଶେଷକୁ ଏ ଦେବରକ୍ଷୀର ମଧ କି ଜୀବନ ଅପମୃତ୍ୟୁ ? ଧିକ, ମରଣ ବରଂ ସହସ ଗୁଣେ ଶ୍ରେୟସ୍କର ।

ନେପଥ୍ୟେ—ସୀତା ଗଲାବନୁ ଶକ୍ତିହରା ହୋଇଚ ରାମ – ବୃଥାଜପ୍ସ ଆଶା ତମର—ପାରବତ ଯାଅ – ଆଗ ସୀତାଙ୍କୁ ଫେରାଇ ଆଣ ।

ଶ୍ରୀରାମ – କିଏ ତମେ ? ବିଶ୍ୱବିଜୟୀ ଅଯୋଧ୍ୟାର ଶାସନକର୍ତ୍ତାଙ୍କୁ ଚିହ୍ନି ନାହିଁ ?

ନେପଥ୍ୟେ – ଶକ୍ତି-ମୁଁ—ହାଃ ହାଃ-ବେଶ ଚିହ୍ନେ ତମକୁ-କଥାମୋର ପସନ୍ଦକୁ ଆସୁନାହିଁ.ନା--ଏବେ ରକ୍ଷା କର ତ ନିଜକୁ ?

ଶ୍ରୀରାମ--ହାଃ ହାଃ-ଶକ୍ତିହୀନ ହୋଇ ପାରେ ରାମ--କିନ୍ତୁ ପ୍ରଜାପୀଡ଼କ ନୁହେଁ ।

(ଲବ ଓ କୁଶ ପ୍ରବେଶିଲେ)

ଲବ--ଅସ୍ତ୍ର ଧର ରାଜା – ନିଜକୁ ରକ୍ଷାକର ।

ଶ୍ରୀରାମ – ଆର୍ଯ୍ୟାବର୍ତ୍ତର ବୀର, ସାମାନ୍ୟ ଶିଶୁ ବିରୁଦ୍ଧରେ ଅସ୍ତ୍ର ଧରେ ନାଁ ।

କୁଶ—କିନ୍ତୁ ସ୍ତ୍ରୀ ବିରୁଦ୍ଧରେ ଅସ୍ତ୍ର ଧରେ ତ ?

କୁଶ – ଲୁଚି ଲଚି ନିରସ୍ତ୍ର ବଣ ପଶୁ ବାନରକୁ ମାରିଜାଣେ ଏକା-

ଶ୍ରୀରାମ – ଶିଶୁ ତମେ-କ୍ଷମାର ପାତ୍ର ସବୁବେଳେ କିନ୍ତୁ ଜାଣ, କାହା ସାଥିରେ ଆଳାପ କରୁଚ ତମେ ?

ଲବ – ଜାଣୁ, ଜାଣୁ – ଭାଲୁ ମାଙ୍କଡ଼ ସର୍ଦ୍ଦାର ସାଥିରେ ।

ଶ୍ରୀରାମ – ଆର୍ଯ୍ୟ ଶିଶୁ ତମେମାନେ – କାହିଁ କଥାତ ସେଇପରି ବୋଧ ହେଉନାହିଁ ।

କୁଶ -- ହଁ ବଣରେ ବଢ଼ିବୁ ଆମେ, ବଣ ଫଳମୂଳ ଖାଇ-ବଣୁଆଙ୍କ ସଙ୍ଗେ ମିଶି କଥାରେ ଆମର ଠିକଣା ନଥାଇ ପାରେ – କିନ୍ତୁ ସହରିଆ ତ ତମେ, ପଲାଉ ଘିଅ ମାଂସରେ ଗଢ଼ା ତମ ଦେହ ଶକ୍ତି କାହିଁ ?

ଲବ--କାଣ୍ଡ କାଣ୍ଡକେ ତମର ଇନ୍ଦ୍ରଜିତ ବିଜୟୀ ଭାଇ ଲକ୍ଷ୍ମଣ ଆଉ ଭରତ-ଶତ୍ରୁଘ୍ନ ଏଇଠି--ମାଟି କାମୁଡ଼ିଲେ ।

ଶ୍ରୀରାମ--ନିଜ ମୁହଁରେ ନିଜର ପ୍ରଶଂସା ଶୋଭା ପାଏନା ବାଳକ--ମନେରଖ ସେହିପରି କୋଟି କୋଟି ଲକ୍ଷ୍ମଣ, ଭରତ ବିଜୟୀ ବୀର--ରାମର ଅଙ୍ଗୁଳି ଠାରରେ କେଉଁ ସମୁଦ୍ର ଗର୍ଭରେ ପଡ଼ି କାହିଁ ଲୀନ ହୋଇଯିବେ, ତାର ସତ୍ତା ରହିବ ନାହିଁ ।

କୁଶ – ତାର ପ୍ରମାଣ--ଆଜିକାର ଯୁଦ୍ଧ—ସାମାନ୍ୟଶିଶୁ ଦୁଇଟିର ବିରୁଦ୍ଧରେ କୋଟି କୋଟି ସୈନ୍ୟ ସାମନ୍ତ ଆଉ ଅଯୋଧ୍ୟାର ମହାରାଜ—ସେ ପୁଣି ସୈନ୍ୟ ସାମନ୍ତ ରଥ-ସାରଥି ଏପରିକି ଦେହରକ୍ଷୀ ପର୍ଯ୍ୟନ୍ତ ନେଇ ବସିଛନ୍ତି ।

ଶ୍ରୀରାମ—ଯଥେଷ୍ଟ ନିଜର ବଡ଼ିମା ପ୍ରଚୁର କରିଚ ବାଳକ--ଏବେ ଅଯୋଧ୍ୟା ମହାରାଜାଙ୍କର ଆଦେଶକୁ ମଥା ନୁଆଇଁ ଶୀଘ୍ର ଯଜ୍ଞଅଶ୍ୱ ଫେରାଇ ଦିଅ ।

ଲବ – ବିନା ଯୁଦ୍ଧରେ ?

କୁଶ – ହାଃ ହାଃ-କାହିଁକି, ତେବେ ଏତେ ଗଣ୍ଡଗୋଳ ?

ଶ୍ରୀରାମ – ଯୁଦ୍ଧ ! ଜାଣ ତୁମେ ଶିଶୁ ?

ଲବ--ଅଯୋଧ୍ୟାର ମହାରାଜ କି ଅନ୍ଧ ?

ଶ୍ରୀରାମ--ଚୁପ୍‌କର ଶିଶୁବୋଲି ଆସୁଚ ମମତା!-ନଚେତ୍ ସାମ୍ରାଜ୍ୟର ଯେ କ୍ଷତି କରିଚ ତୁମେ, ତାର ସମୁଚିତ ଶାସ୍ତି ଦିଅନ୍ତି ବର୍ତ୍ତମାନ ।

କୁଶ--ହଁ, ଅଯୋଧ୍ୟାର ମହାରାଜ-- ସବୁ ଦିନେ ଦୟାଳୁ ।

ଲବ--ଦୟାଳୁ ମହାରାଜ, ଦୟାକରି ଆମ୍ଭମାନଙ୍କୁ ଯୁଦ୍ଧ ଦାହାନ କରନ୍ତୁ, ନଚେତ୍ ଅଶ୍ୱ ମାଗି ନିଅନ୍ତୁ ।

ରାମ – ଯୁଦ୍ଧ, ହାଃ ହାଃ-ତମେ ଯୁଦ୍ଧ ଜାଣ – ଶିଶୁ-ଦେଖିବ ମୁ ତମ ଯୁଦ୍ଧ; ମହାଦେବଙ୍କର ଆଖିପାଣି-ରଣଚଣ୍ଡୀର ମୂର୍ତ୍ତିଧରି ଆଜ ରଘୁକୁଳର ପରାଜୟ ଘଟାଇବ—ନଚେତ୍ ?

କୁଶ—ପୂର୍ବ ଦୁଷ୍କୃତର ସ୍ୱପ୍ନ ଦେଖୁଛନ୍ତି ନା ମହାରାଜ ?

ଶ୍ରୀରାମ – ସାବଧାନ ବାଳକ-ତମେ କ୍ଷମାର ସୁଯୋଗ ନେଇ ଅଯୋଧ୍ୟାର ପବିତ୍ର ସିଂହାସନ ପ୍ରତି ଅବମାନନା କରୁଛ- ଏଇ ଦେଖ ଅନାୟାସରେ ଯଜ୍ଞଅଶ୍ୱ ନେବେ ଅଯୋଧ୍ୟାର ମହାରାଜ-ଆସ--ତମର ସମସ୍ତ ଶକ୍ତି ଖଟାଇ--ପ୍ରତିରୋଧ କର – ଆହୁରିପାର ଯେବେ—ସାହାଯ୍ୟକୁ ତମର ଡାକ । ଭୈରବ—ରୁଦ୍ର ମହାକାଳ ଆଦି ଦେବତାଙ୍କୁ (କହୁଁ କହୁଁ ପ୍ରସ୍ଥାନ)

ଲବ ଓ କୁଶ-ସାବଧାନ ମହାରାଜ !

ଲବ – ବଣୁଆ ବାଳକର ଏକମାତ୍ର ଶରକୁ ସମ୍ଭାଳନ୍ତୁ ଆଗ ମହାରାଜ-

କୁଶ – ବାଲ୍ମୀକି ଶିଷ୍ୟରେ ପରାଜୟ ଦେବ ତମେ ରାମ ? ଅସମ୍ଭବ କଳ୍ପନା ତମର (ପ୍ରସ୍ଥାନ)

ନେପଥ୍ୟେ – ଓଃ, ସୀତା, ସୀତା ଏତେବେଳେ କାହିଁଅଛ ତମେ ?

—ପଞ୍ଚ ପତନ—

## ୪ର୍ଥ ଦୃଶ୍ୟ

(ସ୍ୱର୍ଗପଥ-ଅନ୍ଧାରରେ ଢେଉ ଖେଳ ବୁଲୁଚି)

ଇନ୍ଦ୍ର—ଇଃ ! ଏକ ବିରାଟ ଅନ୍ଧକାର – ସୂର୍ଯ୍ୟ, ଚନ୍ଦ୍ର, ତାରା ସମସ୍ତେ ଲିଭିଗଲେ କାହିଁକି ? ସ୍ୱର୍ଗଟାସାରା ଯେ କଂପୁଚି ! କି ଅଶୁଭ ସୂଚନା ଏ – କିଣ ପୁଣି କେଉଁ ରାକ୍ଷସ ସ୍ୱର୍ଗ ଆକ୍ରମଣ କରିବ ?

ଧର୍ମ—ନାହିଁ -ମହାରାଜା ସେପରି ଆଶଙ୍କା କିଛି ନାହିଁ ।

ଇନ୍ଦ୍ର – କିଏ ତମେ ଧର୍ମରାଜ ଯମଙ୍କର କଣ୍ଠ ସ୍ୱର ପରି ଜଣାପଡେ ?

ଧର୍ମ—ହଁ, ମହାରାଜ-ଏ ଅନ୍ଧାରରେ କିଛି ଦେଖା ଯାଉ ନାହିଁ—

ଇନ୍ଦ୍ର—କାରଣ ଧର୍ମରାଜ ?

ଧର୍ମ—ଜାଣନ୍ତି ନାହିଁ ଆପଣ ? ଅଶ୍ୱମେଧ ଯଜ୍ଞ କରିବାକୁ ଅଯୋଧ୍ୟାର ରାଜା ରାମଚନ୍ଦ୍ର ପଣ କରିଥିଲେ-ଯଜ୍ଞ ଅଶ୍ୱ ତାଙ୍କର ଧରା ପଡ଼ିଲେ ବାଲ୍ମୀକିଙ୍କ ଆଶ୍ରମ ନିକଟ ବଣରେ ତାଙ୍କର ପରାକ୍ରାନ୍ତ ଶିଶୁ ଲବକୁଶଙ୍କ ହାତରେ-ବାପ-ପୁଅଙ୍କର ଅପରିଚିତ ଭାବରେ ଭୀଷଣ ଯୁଦ୍ଧ ଚାଲିଲା –

ଇନ୍ଦ୍ର – ମତେ ?

ଧର୍ମ – ମହାରାଜ ! ଫଳରେ – ରଘୁ କୁଳର ସମସ୍ତ ବୀର, ଶେଷକୁ ଶ୍ରୀରାମ ନିଜେ ମଧ୍ୟ ବର୍ତ୍ତମାନ ଧରାଶାୟୀ ।

ଇନ୍ଦ୍ର – କିଣ କହୁଚନ୍ତି ଧର୍ମରାଜ ! ଏ ପର୍ଯ୍ୟନ୍ତ ଦେବତାର କାର୍ଯ୍ୟ ସରିନାହିଁ – ଏ ପର୍ଯ୍ୟନ୍ତ ପୃଥିବୀ ପୃଷ୍ଠରୁ ହିଂସା ଅନ୍ୟାୟ ଅତ୍ୟାଚାର ପ୍ରଭୃତି ଅସୁରବୃତ୍ତି ଲିଭିନାହିଁ – ଏପରି ସ୍ଥଳରେ ଶ୍ରୀରାମଚନ୍ଦ୍ର ଯେବେ ବୈକୁଣ୍ଠକୁ ଫେରନ୍ତି –

ତେବେ ପୃଥିବୀର, ଆଉ ଆମ୍ଭମାନଙ୍କର ଦଶା କଣ ହେବ ?

ଧର୍ମ – ସେଇ ତ ମହାରାଜ – ଦେଖୁଚନ୍ତି ତ ପ୍ରଳୟ ଉପରେ ତାର ଅନ୍ଧାରମାୟା ଜାଲ ବିସ୍ତାର କରି ସାରା ଜଗତକୁ ବାନ୍ଧିବାକୁ ଯତ୍ନ କରୁଚି – ଏଥିରେ ପୁଣି ଉଲ୍‌କାଗୁଡ଼ା ଖସୁଚନ୍ତି । ବୈକୁଣ୍ଠର ସମସ୍ତ ଲୋକ – ଏଣେ ଯୁଦ୍ଧ କ୍ଷେତ୍ର ଆଡ଼କୁ ଧାଇଁଲେଣି – ଅର୍ଘ୍ୟ – ଧୂପ – ଦୀପନେଇ ତେଣେ ପୁଣି ମହାସତୀ – ସୀତାଙ୍କର ଦଶା ।

ଇନ୍ଦ୍ର – ନାହିଁ ନାହିଁ ଧର୍ମରାଜ – ଚାଲ – ଯେ କୌଣସି ମତେ – ଶୀଘ୍ର ଶୀଘ୍ର ଆମ୍ଭମାନଙ୍କୁ ପିତାମହ ବ୍ରହ୍ମାଙ୍କ ପାଖକୁ ଯାଇ କିଛି ମହତ ଉପାୟ ବାହାର କରିବାକୁ ହେବ – ନଚେତ ସର୍ବନାଶ ।

ଧର୍ମ – କିନ୍ତୁ କପରି ଯିବା – ମୁଁ ବହୁ କଷ୍ଟରେ ଆସିଚି ମହାରାଜ – କେବଳ ସେଇ ରାମ ନାମ ଜପ ବଳରେ – ଠିକ୍ ପାଦ ଆଗକୁ ପାହୁଣ୍ଡେ ମାତ୍ର ସଫା ଦେଖା ଯାଏ ।

ଇନ୍ଦ୍ର – ଚାଲନ୍ତୁ – ସେଇ ରାମ ନାମ – ଏକମାତ୍ର ଆଲୋକ – ତା ଛଡ଼ା – ପ୍ରଳୟ ବିରୁଦ୍ଧରେ ଆଉ କିଏ – କିଏ ଶକ୍ତି ଖଟାଇବ ?

– ପଞ୍ଚ ପତନ –

## ୫ମ ଦୃଶ୍ୟ

(ଯୁଦ୍ଧ ଭୂଇଁରେ ଶ୍ରୀରାମଚନ୍ଦ୍ର ଭୂତଳଶାୟୀ—ସ୍ଥିତ ତାଙ୍କର ରକ୍ତାକ୍ତ ପଦତଳେ ସୀତାଦେବୀ—ମୁକ୍ତକେଶୀ—ଚେତନା ନାହିଁ ଦେହରେ)

ବାସ—(ସୀତାଙ୍କ ମୁହଁରେ ପାଣି ଦେଉଁ ଦେଉଁ)

କୁଶ—(କାନ ଫୁଙ୍କ୍ ଫୁଙ୍କୁ) ନିଃଶ୍ୱାସ—

ଲବ—(ନିଃଶ୍ୱାସ ବାରି) ନିଶ୍ୱାସ ଅଛି ।

ବାସ—ଚେତା ନ ଆସିଲେ ବିଶ୍ୱାସ କ'ଣ ?

ଲବ—(କାନପାଖରେ) ମା--ମା--(ହଲାଇଲେ) କଣ କରିବା ଭାଇ ?

କୁଶ—କଣ ଆଉ କରିବା—ଅର୍ଜିଲା କର୍ମ ଆମର ।

ଲବ—ମତେ ଖାଲି ଛୁନିଆ ଲାଗୁଚି ଭାଇ ! ବିହଣ୍ଟା କଣ ହୋଇ ଯାଉଚି—ବାପାଙ୍କୁତ ମାଇଲେ—ଆଉ ମା—କଣ ବଞ୍ଚିବ ନାଇଁ ?

ବାସ—(ମଥାରେ ପାଣି ପୁଣି ଥାପଡେଇ) ଏତେବେଳକୁ ବାବା—ଭଲ ଥାନ୍ତେ ।

କୁଶ—ଲବ—ନିଆଁରେ କେବଳ ଝାସଦେଲେ ଆମର ଶାନ୍ତି ।

ବାସ—ଅଇସୁଲକ୍ଷଣୀ ସୀତା—ସତୀ ସ୍ତ୍ରୀ—ଦୁନିଆ ସିନା ଉଜୁଡ଼ାଇ ଦେଲା—ଆଜି ପତି ସାଙ୍ଗରେ ବୈକୁଣ୍ଠକୁ ତାକୁ କିଏ ବାଟ ଛକିବ ?

ଲବ—ମାଉସୀ--କଣ ହେଲା ଆମର ? ବାସ--ଶୁନ ହୋ—ବାବା--ମାକୁ ବଞ୍ଚିଦେ--ଆଉଁସି ଦେ--ଆଚ୍ଛା କୁଶ ! ଦେଖି ଦେଇ ମହାରାଜା ନାଁକୁ ଖୁବ୍ ବଡ଼ ପାଟିରେ ମା କାନରେ ତମେ ବିହେଇଁଯାଅ କୁହନି--ସେତ ତାଙ୍କର ଭାରି ପ୍ରିୟ ନାଁ ।

କୁଶ--ହଁ ମାଉସୀ—ବାବା ତ କହୁଥିଲେ--ରାମ ନାମର କାଳେ ଭାରି ପ୍ରତାପ--

ଲବ ଓ କୁଶ—(ସୀତାଙ୍କ କାନ ପାଖରେ) ରାମ—ରାମ--ରାମ--

ସୀତା--(ଚେତା ପାଇ) ରା--ମ

କୁଶ ଓ ଲବ--ଜୟ ଶ୍ରୀରାମ (୨ଥର)

ସୀତା--(ଶ୍ରୀରାମଙ୍କୁ ଗୁହାରିଲେ) କାହିଁ--ଟିକଏ ହେଲେ ତ ମୁହଁ କଲା ପଡ଼ ନାହିଁ--ଖାଲି ମଉଡ଼ମଣି—କେତେ କେତେ ଯୁଦ୍ଧରେ ଲୁଡ଼ରେ କେତେ ଶର ଭାଜ ଯାଇଚ—ଆଜ ଏଇ ଅଜ୍ଞାନ ଟୋକାଙ୍କର ଶରରେ ତମେ ଗୁଳିଗଲ—(କାନ୍ଦଲେ)

ବାସ—ତୁନ ହୁଅ ଭଉଣୀ—ଥୟ ଧର--ଆଉ ଏମିତ ହେଲେ କଣ ହେବ ?

(ତୁନ କରାଇବା)

ସୀତା--(ହାତକୁ ଧରି) ମୋ ସିନ୍ଦୂର ଟୀକା—କଏ ପୋଛି-ଦେଲା—ବାସ ମୋ ହାତର କାଚ କଏ ଚୂନା କଲା ?

କୁଶ—ମା—ମା—ଆମକୁ ଅଭିଶାପ ଦେ ମା !

ଲବ—(କହିଁ କହିଁ କାନ୍ଦୁଥିଲା)

ବାସ—କଣ କରିବା ଭଉଣୀ—ଟିକଏ ଥୟ ଧର ।

ସୀତା—ହତଲକ୍ଷ୍ମୀ ମୁଁ—କଏ କହେ ଲୋ ମୋତେ ସତୀ ବୋଲି
ବାସ—ସତୀର କି ସିନ୍ଦୂର ଟୀକା ନଭେ ?

ବାସ—ଏମିତ ବାଇଆଣୀ ପରି ହେଲେ ଆଉ କଣ କରିବା ?

କୁଶ—ମା—ମା—ଆମକୁ ଅଭିଶାପ ଦେ ମା !

ଲବ—ପୋଡ଼ି ଜାଳି ଦେ ମା—ଆଉ କାନ୍ଦ ନା (କାନ୍ଦୁଥିଲେ)

ସୀତା — ଧର୍ମରାଜଙ୍କର ରାଜ୍ୟରେ ପରା ଅଧର୍ମ ନାହିଁ ଭଉଣୀ — ମୋ ବେଳକୁ କେମିତି ଓଲଟା ରାଜ୍ୟର ହେଲା — କ'ଣ ?

ବାସ — ଶୁଣ ହୋ — ଭଉଣୀ — ଏଣେ ପିଲା ଦିଟା ଯେ କାଠ ହୋଇଗଲେଣି ?

ସୀତା — କଣ ମଥା ତାର ବିଗିଡ଼ି ଗଲା ନା — ନିଶ୍ୱାସ ଦେଖି ଏମିତି କଲା — ଭଉଣୀ — ମୋ ସିନ୍ଦୂର ଟୀକା ନଷ୍ଟ ଦେଲା —

ବାଲ୍ମୀକ — (ପ୍ରବେଶ) ସତୀ ଶିରୋମଣି ମଥାର ସିନ୍ଦୂର ନଷ୍ଟଇବ କିଏ ?

ସୀତା — (ବାଲ୍ମୀକଙ୍କି କୁଣ୍ଢାଇ — ଦେଖି) ବାବା — ବାବା — ମୋ ସିନ୍ଦୂର ଗାର କେମିତି ନଭିଲା ? (କୁଣ୍ଢାଇ ପକାଇଲେ) ଧର୍ମ କଣ ନାହିଁ ?

ବାଲ୍ମୀକ — ଶୁଣ ହୋ — (ସୀତାଙ୍କର କୋହ କମି ଆସିଲା ବେଳକୁ) ଆରେ ଏତେ ଗୁଣିଆ ପିଲାଟାଏ ତୁ — ଅକଳ ଟିକଏ ନାହିଁ — ଯାହାର ପାଦ — ଧୂଳି ଲାଗି ପଥର ମଣିଷ ହୁଏ — ଯାର ନାଁ ଧରି ମାଙ୍କଡ ସମୁଦ୍ର ଡିଏଁ — ସେ ଏଇ ମେଣ୍ଢା ଟୋକାଙ୍କ ହାତରେ ବନ୍ଦ ରହିବ ? ହେଃ — ଶ୍ରୀରାମଚନ୍ଦ୍ରଙ୍କୁ ଚିହ୍ନିଚୁ ତୁ — ଜାଣୁ, ବ୍ରାହ୍ମଣ, ଋଷି, ମୁନି, ୩୩ କୋଟି ଦେବତା — ବ୍ରହ୍ମା — ଶିବ — ପର୍ଯ୍ୟନ୍ତ — ଏଇ ରାମ ନାମକୁ ଭଜନ କରୁଚନ୍ତି — ଏଇ କମଳାସୁ କୋଦଣ୍ଡଧାରୀ ରୂପକୁ ଚିନ୍ତା କରୁଚନ୍ତି — ତାଙ୍କୁ ଛୁଇଁବ ମରଣ ? ସୃଷ୍ଟି — ସ୍ଥିତି — ପ୍ରଳୟରେ ପରା — ଏଇରାମ — ଏକା ଅମର — ନିତ୍ୟ ସନାତନ ।

ବାସନ୍ତ — ଇମିତି ସବୁ ତେବେ କାହିଁକି ହେଲା ?

ବାଲ୍ମୀକ — କଣ ହେଲା — ଧର୍ମରାଜ୍ୟ ସ୍ଥାପନ ପାଇଁ କାର୍ଯ୍ୟ କରିବାକୁ ଆସିଚନ୍ତି ସେ — ଆଦର୍ଶ ରାଜା — ଆଦର୍ଶ ଗୃହସ୍ଥ ସବୁଥିରେ ଆଦର୍ଶ ଶିକ୍ଷା ଦେଉଚନ୍ତି ।

ସୀତା — ବାବା — ସେ ଉଠି କଥା କହିବେ ତ ?

ବାଲ୍ମୀକ — ଓଃ — ପୁଣି ପଚାରୁଚ — ପ୍ରଜାରଞ୍ଜନ ପାଇଁ ସହଧର୍ମିଣୀଙ୍କ ବନବାସ ଦେଲେ — ପୁଣି ଏଣେ ପର ସତୀ ସ୍ତ୍ରୀର ଗୌରବ ରକ୍ଷାପାଇଁ ପୁଅ ହାତରେ ସବଂଶେ ପରାସ୍ତ ।

ସୀତା — ପୋଡି ଯାଉ ସେ ସ୍ତ୍ରୀର ଗୌରବ — ବାବା — କମିତି ତାଙ୍କୁ ଉଠାଅ —

ବାଲ୍ମୀକ — ଉଠାଇବ କିଏ ? ଏ ପରା ଓ୍ୱାକୁଣ୍ଠାଏ — ତାଙ୍କର ଓଲଟା ନାଁ ମରା ମରା ଜପି ହୋଇଚି — ଆଜ ବାଲ୍ମୀକ । ସେଇ ରାମ ନାମରେ ମୃତ୍ୟୁ ସଞ୍ଜୀବନୀ — ସେଇଥିରେ ଉଠିବେ ସେ ମା ।

ବାସ — ଯା ହେଉ ବାବା — ପବନ ଦିଅ ତମେ — ତମର ପାଟିରେ ସେଇ ରାମ ନାମ ହିଁନା ମୃତ୍ୟୁ ସଞ୍ଜୀବନୀର କାମ କରିବ — ଆଉ କଣ ଆମ ଦ୍ୱାରା ହବ ସେ ।

ବାଲ୍ମୀକ — ହଁ (ପାଖରେ ବସି କମଣ୍ଡଳରୁ ପାଣି ସିଞ୍ଚି) ରାମ — ରାମ — ରାଜୀବଲୋଚନ ଉଠ — ଆଖି ମେଲ ଗୃହଁ ପ୍ରଭୁ — ଦେଖ — ଅଯୋଧ୍ୟାର ପାଟ ମହାଦେଈ — ରାଜକୁମାର — ଏ ବଣର ପଶୁ — ପକ୍ଷୀ କ ଆକୁଳ ତମ ବିରହରେ ! ସତ ଯେବେ ରାମ ନାମ ଗାଇ ବହେ ନିର୍ଝରିଣୀ — ପଶୁ ପକ୍ଷୀ କଣ୍ଠ ଫିଟେ ଯେବେ ସତେ ରାମ ନାମ — ବଣ ଗଛ ଲତା ସତ ଯେବେ ରାମ ନାମେ ହସିଉଠେ ଫୁଲ ଫଳ ଧରି — ଉଠ, ତେବେ ରାମ —

(ରାମଚନ୍ଦ୍ର ଧୀରେ ଧୀରେ ଉଠିଲେ)

ଶ୍ରୀରାମ—କଏ – ବାବା – (ଧୀରେ ଧୀରେ ଉଠି ବସିଲେ)

ସୀତା-(କ୍ରମେ ଘୁଞ୍ଚି ଠିଆହେଲେ)(ନେପଥ୍ୟେ) ଜୟ ଶ୍ରୀରାମଚନ୍ଦ୍ରଙ୍କର ଜୟ (ସ୍ୱର୍ଗରୁ କୁସୁମ ବୃଷ୍ଟି ହେଲା – ଜୟଧ୍ୱନି ସହ)

ବାଲ୍ମୀକି – ମନ୍ଦ ପବନ ତାଳ ଛନ୍ଦଧର ଗାଇ ବୁଲେ ବଣ ସାରା ରାମନାମ – ଗୌରବ ଗାରମା – ସଞ୍ଚାର ସଞ୍ଚାଇ ଦେଖି ହସେ ଚନ୍ଦ୍ର – ତାରା ।

ସୀତା – (ସୀତା ଅଧୋବଦନରେ ଠିଆ ହୋଇଥିଲେ, ମଝିରେ ଚାହୁଁଥିଲେ ଶ୍ରୀରାମଙ୍କୁ) ଜୟଧ୍ୱନି ସହ ପୁଣି ଫୁଲ ବର୍ଷା ହେଉଥିଲା; ( ସୀତାଙ୍କୁ ଆଶ୍ଚର୍ଯ୍ୟ ଭାବେ ଚାହିଁ ) ସୀତା – ସୀତା – ସୀତା –

ଶ୍ରୀରାମ – (ଘୁଞ୍ଚି ଯାଉଥିଲେ ଅଳ୍ପ)

– ପଞ୍ଚ ପତନ –

———

# ଚତୁର୍ଥ ଅଙ୍କ

## ୧ମ ଦୃଶ୍ୟ

(ଚଉଁରୀ ମୂଳେ ଫଳ ଦେଇ ପ୍ରଣତ ବାଢୁଥିଲେ କୌଶଲ୍ୟା)

ସୁମିତ୍ରା — ଯା ହଉ ନାନୀ — ଠାକୁରେ ଗୁହାରି ଶୁଣିଲେ ତମେ ତ କେଜାଣି କେବଳ ମାନସିକ କରିଥିବ — ମୁଁ ତ ଗଡ଼ ଚଣ୍ଡୀଙ୍କୁ ସୁନା ଚମ୍ପା ଶଏଆଠ ସଇଚି — ଆଉ ଶିବଙ୍କୁ ଜଳଶେଇ କରେଇବି !

କୌଶଲ୍ୟା — ହଁ ଭଉଣୀ; ହସିଲ ଗାଁ — ବସିଲଣି, ଆଖିରେ ଦେଖିଲଣି ମୁଁ — ବୋଉ ଆଇଲେଣି — ଏ ପୁଣି ପ୍ରଜା ।

ସୁମିତ୍ରା — ପ୍ରଜାମାନଙ୍କ ବଗୃରରେ ସବୁ ହଉଚି ପର୍ବ — ଖାଲି ବଉତ ନୁହେଁ — କୁମାରମାନେ ସବୁ ପୁଣି ସାଙ୍ଗରେ —

କୌଶଲ୍ୟା — କେ ଜାଣି, ସେଇ ସିଏ ଦେଇଚନ୍ତି ସିଏ ଜାଣନ୍ତି — କଏ ତ କେତେ କଥା କହୁଚନ୍ତି — ମୁଁ ଜମା ସେ ସବୁ କାମରେ ପକାଉ ନାଇଁ ।

ସୁମିତ୍ରା — ମା — ତାଙ୍କ କର୍ମେମାନେ ପରା ସବୁ କହୁଚନ୍ତି — କାଳେ ଘର ଉଜଲ — ଡାଉଲ ଛୁଆ ଦଖଣ୍ଡ ମା — ଠିକ୍ ତାଙ୍କ ବାପ ଅଣିସବୁ ।

କୌଶଲ୍ୟା — କଲ୍ୟାଣକର କେମିତି ସେଇ ଦଖଣ୍ଡ ଧାପି ହୁଅନ୍ତି — ପ୍ରଜାଙ୍କ କଣ୍ଠରେ ମା ସରସ୍ୱତୀ ବସନ୍ତୁ — [ଜୁହାର ହେଲେ)

ସୁମିତ୍ରା — ହଁ ଗୋ—ଆସନ୍ତୁ ସେ ଟୋକା—ମୁଁ କହିବି ନାଇଁକ, ଏତେ ଦୁଷ୍ଟ — ଏତେ ସୈନ୍ୟ — ସାମନ୍ତ ଶେଷକୁ — ବାପ — କକାଙ୍କ ଜୀବନ ନେଇଥିଲେ ।

କୌଶଲ୍ୟା — ସବୁ ଦଶାର ଫେର ଭଉଣୀ — କପାଳ କଥା — ବାଲ୍ମୀକ ମହର୍ଷି ନ ଥିଲେ ତ — ଆମ ଭେକାଳ ବୁଡ଼ିଥାନ୍ତା — ହେଲେ ଛୁଆ ଗୁଡ଼ା ସେ କଣ ଜାଣିଚନ୍ତି — ଆଖିପାଣି ଆଖିରେ ମାର ତ ମା ବନ ନେଲା — ବାପ, କକାଙ୍କ କଥା କାନରେ ପକାଇ ତାଙ୍କୁ ବହ୍ୟାଉଚ କି'ଏ ?

ସୁମିତ୍ରା — ଇଲୋ କଣ ଆଉ କାହା ମନରେ କଷ୍ଟ ଅଛି ନାମ-କର୍ମେ ସବୁ କହୁଚନ୍ତି ପରା—ଯା ହେଉ ବାପ ଅଧିକା ପୁଅ — ଆମ ରଘୁକୁଳର ନାଁ ପାଣି ରଖିବେ, ଆଝୁତ ଇମିତ ହେଲେଣି — ହଉ ଅସଲ ଠାକୁରେ ତାଙ୍କୁ ଆଇଷ ଦେଇଥିବେ କ ?

କୌଶଲ୍ୟା — ସେଇଆ କହ ଭଉଣୀ — ସେଇଆ କହ — ତୋ ତୁଣ୍ଡ ସୁତୁଣ୍ଡ ହେଉ ।

ଲକ୍ଷ୍ମଣ—ବଡ଼ମା — ବଡ଼ମା—ସବୁଠିକ୍ ହୋଇଗଲା — ବାଲ୍ମୀକ ମହର୍ଷି ଏଇ ଗଲେ, ଆମେ ସବୁ ବଦା ହେଇ ଆଇଲୁ ।

ସୁମିତ୍ରା—ସେ ସବୁ ସଲଟନରେ ଆସିବେ-ନା ରେ-ଏଠୁ ତମେ ସବୁ ଯିବତ ?

ଲକ୍ଷ୍ମଣ—ସଲଟନରେ କେମିତ ଆସିବେ ମ ? ସଭାରେ ଆଗ-ସମସ୍ତଙ୍କ ସାମନାରେ ନନା ପାଟମହାଦେଈଙ୍କୁ ଗ୍ରହଣ ନ କଲା ପର୍ଯ୍ୟନ୍ତ ?

କୌଶଲ୍ୟା — ହଁ ରେ, ସିଏ ପଚ୍ଛେ ଆମର ଗୃହକର ଆସନ୍ତୁ—ସଲଟନ ହେଉଚ ? ଆଗ ଏ ଭଙ୍ଗାଘର ଯୋଡ଼ା ହେଉ —

ସୁମିତ୍ରା—ମହାଦେଈ ସଲଟନରେ ନ ଆସିଲେ — କୁମାରମାନେ ଆସିବେ କେମିତ ? ଏ ଛୋଟ ଛୁଆ ଦିଖଣ୍ଡକୁ ଚଳେଇ ଚଳେଇ ଆଣିବ ତ ?

ଲକ୍ଷ୍ମଣ — ସ୍ଲେଟ ଦେଖୁଚ — କାଲି ଠଉ ଆମ ଦଫା ନକାଳଚନ୍ତି- ଆଜ ଯାନ ବାହାନ ସଳଟନ ପାଇଁ କଏ ହୁକୁମ ଦବ — କୁହନ୍ତ ?

କୌଶଲ୍ୟା — ଆରେ ସେଥିରୁ କଣ ମିଳବ ? ତୁ କହନ — ଏ ଘୂମା ଘଣ୍ଟିଆ ବଡ଼କୁ ଆଣିବାକୁ ଷୋଳପଣ ରାଜ ତ ?

ଲକ୍ଷ୍ମଣ — ତାଙ୍କର ରାଜ-ବେରାଜ ଆଉ କଣ ? ପ୍ରଜାସବୁ କହୁଚନ୍ତି- ଜିଏତ ନାହିଁ କରବେ ନାହିଁ ନଷ୍ଟେ — ହେଲେ ହଁ ଟା ଆଗ କହୁଚନ୍ତ କେମିତି ?

ସୁମିତ୍ରା — ସେ କଥା ତା ଜାତକରେ ନାହିଁ —

ଲକ୍ଷ୍ମଣ — ହଉ — ବଡମା — ଆଜଟିକଏ ଏକାଠି ବସି ଚଣ୍ଡି ଶୁଣନ୍ତେ ନାଇଁ-ମୋର ଗୋଟେ ମାନସିକ ଥିଲ — ପୁରୋହିତେ ଆସ ସିବେଣି ।

ସୁମିତ୍ରା — ଚଣ୍ଡୀଙ୍କ ମନ୍ଦରକୁ ଯିବ ନା-ତମ ଉଆସକୁ ?

ଲକ୍ଷ୍ମଣ — ନାଇଁ ମନ୍ଦରକୁ ।

କୌଶଲ୍ୟା — ଚୋର ବ ମନଣିଅଛୁ ବାବା — ବଡ଼ ପୁତୁରଙ୍କ ଲଗି ।

ଲକ୍ଷ୍ମଣ — ନା — ମା — ନନା ଆଉ ବଡ଼ଙ୍କ ଲଗି ।

କୌଶଲ୍ୟା — ସୁମି — ଏ ଲକ୍ଷ୍ମଣ -- ତୋ ଗର୍ଭରୁ ଆସିନାଇଁ — ମୋ ଗର୍ଭରୁ ।

ସୁମିତ୍ରା — ହେଲ ଅଧିଆ ବଛଣାରୁ ତ ଆଜ ଉଠୁଚ ମନ୍ଦର ପର୍ଯ୍ୟନ୍ତ ଗ୍ଲ ପାରିବନା ?

କୌଶଲ୍ୟା — ଦେଖୁଚୁ ; ଧର୍ମର ବୋଉଟା ମୋର କେତେ ବାଟରୁ ଗ୍ଲ ଗ୍ଲ ଆସିବ-ଆଉ ମୁଁ ତା ପାଇଁ କାମ ହବ-ବାଟ ୧୦ ପାହୁଣ୍ଡ ଯାଇ ପାରିବ ନାହିଁ — ଗ୍ଲ ଆସିଲେ ସେଠୁ ପୁଣି — ସନ୍ଧ୍ୟା ।

ସୁମିତ୍ରା — ହଁ ଏ ମାନଙ୍କର ଗୁଡ଼ା ଗୋଟି ଗୋଟି ଭୁଟେଇଦେଲେ ଖଲାସ —

ଲକ୍ଷ୍ମଣ — ଯାଗଣା ତ ମଝିରେ ଥିଲା — କଣ କରାଯିବ ?

ସୁମିତ୍ରା — ମୋର ତ ଅଣ୍ଟା ପିଠି ମୋଟେ ହଲୋଇ ହେଉନାହିଁ —
କଣ କରିବ — ଯିଏ ଯେତେ କଲେ — କାମ କଣ ହାତରୁ ଛାଡ଼ି
ଯାଉଛି ନା — ଏତେ ବେଶ୍ଙ୍କୁ ହାତରେ ପଇଲେ କାମ ଗୁଡ଼
ହଉଛି ?

କୌଶଲ୍ୟା — ହଉ — ଯା — ତୁ — ବାବା — ଧୂମୀ — ଯା — ତୁ
ଲୁଗାପଟା ପିନ୍ଧ ବାହାର — ମୁଁ ଏଇ ଆଇଲି ।

ସୁମିତ୍ରା — ହଁ — ବେଗି, ବେଗି ।

## ୨ୟ ଦୃଶ୍ୟ ( ରାଜସଭା )

(ରାଜସଭାରେ ପାରିଷଦ ବେଷ୍ଟିତ ମହାରାଜା ରାମଚନ୍ଦ୍ର ଉପବିଷ୍ଟ, ଭରତ, ଦେହରକ୍ଷୀ, ଲକ୍ଷ୍ମଣ, ଚାମର ଓ ଶତ୍ରୁଘ୍ନ ଆଲଟରେ ସେବା କରୁଥିଲେ — ବ୍ରାହ୍ମଣ, ଋଷି, ପୁରୋହିତ, ବଶିଷ୍ଠ ଓ ବାଲ୍ମୀକି ଯଥାସ୍ଥାନରେ ଆସନ ଗ୍ରହଣ କରିଥିଲେ । ଲବକୁଶ ଗାଉଥିଲେ — )

ଲବକୁଶ — ରଘୁବଂଶ ଚୂଡ଼ାମଣି ଜାନକୀ ନାୟକ
ବିଶ୍ୱାମିତ୍ର ଯଜ୍ଞ ରକ୍ଷା କଲା ଯା ଶାୟକ,
ପାଷାଣୀ କଲା ମାନବୀ ଯା'ର ପଦରେଣୁ
ଅଳପକେ ଭାଙ୍ଗିଲା ଯେ ଉମାକାନ୍ତ ଧନୁ ।
ପରଶୁରାମ ଦର୍ପ ଦଳି — ପିତା ସତ୍ୟ ପାଳି —
ବିହରିଲା ବନେ ଯେ ସାଥିରେ ଧରି ବାଳୀ,
ପ୍ରେୟସୀ ବଚନେ ମାୟାମୃଗ ବଧ କରି
ବାଳୀନାଶି ସୁଗ୍ରୀବଙ୍କୁ କଲା ଦଣ୍ଡଧାରୀ ।

ସିନ୍ଧୁ ଜଳେ ବନ୍ଧ ବାନ୍ଧ ଲଙ୍କା କରି ଜୟ
ମାରିଲ ଯେ ଅକ୍ଷୟ ରାବଣ ନାସି ଭୟ
ଗୋ-ବ୍ରାହ୍ମଣ ହିତେ ଯୁଗେ ଯୁଗେ ଅବତାର
ସେ ଶ୍ୟାମସୁନ୍ଦର ରାମ ପଦରେ ଜୁହାର ।

**ସୁମନ୍ତ** – ସୁନ୍ଦର ରଚନା – ଉପସଂହାରରେ ଠିକେ ଠିକେ ମହା-ରାଜାଙ୍କର କୀର୍ତ୍ତିକଳାପ ସବୁ ମୂର୍ତ୍ତି ଉଠୁଛି ।

**ବଶିଷ୍ଠ** – (ବାଲ୍ମୀକିଙ୍କୁ କହିଲେ) ଭାରତୀ ବରପୁତ୍ର, ଆପଣଙ୍କ ରାମାୟଣ ଯୁଗେ ଯୁଗେ ନିଜ ମହିମାରେ ଝଲସି ଉଠିବ – ସୌରଭରେ ତାର ସାରା ପୃଥିବୀ ମହକାଇବ – । ଏହି କାବ୍ୟ ଶିରୋମଣିରେ ରଘୁବଂଶର ଅମରକାହାଣୀ ସଙ୍ଗେ ସଙ୍ଗେ ପୁଣ୍ୟମୟୀ ମା ଭାରତର ରାଜନୀତି – ଧର୍ମନୀତି – ପାରିବାରିକ ଜୀବନ – ତପୋବନର ପବିତ୍ର ଚିତ୍ର, ସ୍ୱଭାବ ସୁନ୍ଦର – ସରଳ ଏବଂ ଅକୃତ୍ରିମ ଆଙ୍କି ଛନ୍ତି ଆପଣ । ତପୋବନରୁ ଆପଣଙ୍କର ଏଇ ଅମୃତ ସଂଗୀତ ଝରି ପୃଥିବୀ ମଥାରେ – ଆଶୀର୍ବାଦ ଢାଳି ଦେଇଛି – ମହାକବି ଧାରା ପାପ ତାପ ଧୋଇ ଶାନ୍ତି ଦେଇଛି । ସୁଖ ଦୁଃଖ ପାପ ପୁଣ୍ୟର ବୋଝବୋଝ ଅନ୍ଧାରରେ ଧୂସରି ଗୁଳିତ ଯେ ମଣିଷ ଜାତି – ତାକୁ ଆଜ ଶୀତଳ ଚନ୍ଦ୍ର କରଣରେ ଗାଧୋଇ ଦେଇଛି । ବିଷ୍ଣୁଙ୍କର ପୂଜା ଯେପରି ତାଙ୍କର ପାଦୋଦକ ଗଙ୍ଗାରେ ହୁଏ-- ସେଇପରି ଆପଣଙ୍କର ପୂଜା କରିବ ଏଇ ଜାତି--ଏଇ ରାମାୟଣର ଗାନରେ । ଏହାଛଡ଼ା ଆପଣଙ୍କର ଯୋଗ୍ୟପୂଜା ଅନ୍ୟ କୌଣସି ଉପାୟରେ ହୋଇ ପାରେ ନା ।

ଶ୍ରୀରାମ – ତଥାପି ଆଜ ଜାତି, ଦେଶ ଏଇ ପବିତ୍ର ପୁଷ୍ପ ଆପଣଙ୍କ ଚରଣରେ ଅର୍ପଣ କରୁଛି । ଭାରତର ଜାତି ପିତା, ଦେଶ ପିତା – ନିଜ ଗୃହରେ ତାହା ଗ୍ରହଣ କରନ୍ତୁ । (ହାତ ଯୋଡ଼ିକରି) ସାରସ୍ୱତଙ୍କର ମଣିଷ ଜାତିକୁ କଲ୍ୟାଣ ଦିଅନ୍ତୁ ।

( ବାଲ୍ମୀକି ମାଳା ଗ୍ରହଣ କରି ସାରିଲା ପରେ )

ବାଲ୍ମୀକି—ଭାରତର ରାଜମନ୍ଦିର ସବୁଦିନେ କବି, ଚିତ୍ରକର କାରିଗରର ପୂଜା କରିଛି,—ଏଣୁ ଆଜ ମହାରାଜଙ୍କର ସମ୍ମାନ ମାତୃଭୂମି ଗ୍ରହଣ କରୁଛି ମୁଁ – କନ୍ଦ୍ର (ଦୀର୍ଘ ନିଃଶ୍ୱାସ ମାରି ମଥାନତ କରି ଧୀରେ ବସିଲେ)

ସୁମନ୍ତ୍ର—ଜାଣେ କବିର ଆନନ୍ଦ, ଏଇ ମାନ ସମ୍ମାନରେ ନୁହେଁ— ତାର ଆନନ୍ଦ – ତାର ଲେଖନୀ ରଚନାରେ—ଆଜି ସେ ପାଏ ନିର୍ମଳ ଆନନ୍ଦ, ଯେତେବେଳେ ତାର କବିତାର ଛନ୍ଦ, ସୁର, ତାଳ, ଲୟ, ଭାଷା, ସୁଗାୟକ କଣ୍ଠରେ ମୂର୍ତ୍ତିମନ୍ତ ହୋଇ ଉଠେ, ଦେଶର ଆଦର୍ଶକୁ ଯେତେବେଳେ ଗ୍ରହଣ କରେ ।

ବଶିଷ୍ଠ—ଯେଉଁଦିନ ଭାରତର ଘରେ ଘରେ ଏଇ ରାମାୟଣର ଆଲୋଚନା ଚାଲିବ – ଏଇ ଆଦର୍ଶରେ ପ୍ରତ୍ୟେକ ଭାରତବାସୀ ନିଜକୁ ଗଢ଼ିବାକୁ ଯତ୍ନ କରିବେ, ସେଇଦିନ ରାମାୟଣ କବିଙ୍କର ପ୍ରକୃତ ପୂଜା ହେବ ।

ସୁମନ୍ତ୍ର—ମହାତେଜ – ରାଜକୁମାରଙ୍କ ଲଳିତ କଣ୍ଠସ୍ୱର ସହିତ ଆପଣଙ୍କର ଶିକ୍ଷା କୌଶଳ ଆଜ ଅପୂର୍ବ ଆନନ୍ଦ ଦେଇଛି ।

ବଶିଷ୍ଠ – କୁମାରଙ୍କ ଯୁଦ୍ଧ କ୍ଷେତ୍ରର ପ୍ରତିଭା, ଅସୀମ ସାହସ; ଅଦ୍ଭୁତ ରଣକୌଶଳକୁ ମଧ୍ୟ ଭାରତ ଭୁଲିପାରିବ ନାହିଁ ।

ସୁମନ୍ତ – ଅଯୋଧ୍ୟାର ପତାକା ଅନ୍ୟ କିଏ ନୁଆଁଇ ପାରେ ?

ବଶିଷ୍ଠ—ସିଂହ ଶିଶୁ ।

ବାଲ୍ମୀକି—ଶୁଣନ୍ତୁ, ଜବର ସମ୍ମାନ ନେବାକୁ କମ୍ବା ରାଜକୁମାର-ମାନଙ୍କର ଗୁରୁର ଗୌରବ ନେବାକୁ ଆଜ ବାଲ୍ମୀକି ଏଠାକୁ ଆସିନାହିଁ । ଆପଣମାନେ ଜାଣନ୍ତି, ପ୍ରଜାର ସନ୍ଦେହରେ ଦୋହଦମୀ ଅଯୋଧ୍ୟା ରାଣୀଙ୍କୁ ଲକ୍ଷ୍ମଣ ଏକାକିନୀ ଅସହାୟ ଅବସ୍ଥାରେ ଘୋର ଅରଣ୍ୟରେ ଛାଡ଼ି ଆସିଲେ । ସେଇ ମୁହୂର୍ତ୍ତର ଅବସ୍ଥା ସେ ଜାଣନ୍ତି । ତା ପର ଅବସ୍ଥା ଦେଖିଛି ମୁଁ । ସାନ୍ଧ୍ୟକୃତ୍ୟ କରିବାକୁ ଗଙ୍ଗାଘାଟକୁ ଆସିଛି, ହଠାତ୍ ଝଡ଼ ଆସିଲା—ଅନ୍ଧାରରେ ମୁହଁକୁ ମୁହଁ ଦିଶିଲା ନାହିଁ । ଆକାଶରେ ବଜ୍ରର ଘଡ଼ଘଡ଼ିର ଚମକ । ଝଞ୍ଜାକୁଳର ପବନ ବାଜିର ମାଡ଼—କଳ୍ପନା କରନ୍ତୁ, କି ନର୍ଯ୍ୟାତନା ଭିତରେ ସେ ମଝିରେ ମଝିରେ ଚଇତନ୍ତ ଅବଳାର କରୁଣ ସ୍ୱର କାନରେ ପଡ଼ିଲା – ସେଇ ସ୍ୱରକୁ ଲକ୍ଷ୍ୟରଖି ଗଲିଲି ମୁଁ । ଦୈବଯୋଗେ କଷ୍ଟରେ ଭେଟିଲି ଅଯୋଧ୍ୟାର ରାଜଲକ୍ଷ୍ମୀଙ୍କି ! ଓଃ ଏବେ ବି ସେ ବେଳ ମନେ ପଡ଼ିଲେ ଛାତି ଖଣ୍ଡ ଖଣ୍ଡ ହେଲା ପରି ଲାଗେ । ଦୁନିଆର ମାୟା ମମତା କାଟି କଠୋର ତପସ୍ୟାରେ ନିଜକୁ ଗଢ଼ି; ଜୀବନର ଶେଷ ସୀମାରେ ପହଞ୍ଚିଛି ମୁଁ । ଅଶ୍ରୁ ଧରି ପାରିଲି ନାହିଁ । ସେଦିନଠୁ ବ୍ରହ୍ମର୍ଷି ମା ମୋର—(ଆକୁଳ ଭାବରେ କାନ୍ଦି ଉଠିଲେ) (ମହାରାଜ ରାମଙ୍କର କରୁଣଭାବ ଫୁଟି ଉଠିଲା) ଶୁଣନ୍ତୁ, ଶୁଣନ୍ତୁ – ଆପଣମାନେ କାନ୍ଦୁଛନ୍ତି କିନ୍ତୁ ମୋ ଆଖିରେ ଆଉ ଅଯୋଧ୍ୟାର ରାଜଲକ୍ଷ୍ମୀଙ୍କ ଆଖିରେ ଆଉ ଲୁହ ନାହିଁ – ଶୁଖି ଯାଇଛି ବହୁଦିନୁ (ପୁଣି କାନ୍ଦ ଶୁଭିଲା – ବାଲ୍ମୀକି ବସିଗଲେ) ।

ବଶିଷ୍ଠ — ଏକମାତ୍ର ପ୍ରଜାର କଥାରେ, ଅଯୋଧ୍ୟା ସିଂହାସନର ଇତିହାସରେ କଣ ଘଟି ଯାଇଚ ଶୁଣନ୍ତୁ । ଯେଉଁ ସ୍ତ୍ରୀ — ଉଚ୍ଛଳ ଯୌବନରେ ରାଜଜାଆସରେ ଭୋଗବିଳାସ ମଧ୍ୟରେ ଗୋଇଠା ମାରି ବଣରେ ବୁଲିପାରେ, ସ୍ୱାମୀ ପଦସେବାରୁ ଅନ୍ତର ହୋଇ ତାର କ ସତ ରହେ ? ନାନା ଆସ୍ୱାସନା ସତ୍ତ୍ୱେ ଶୁଣୁଚ — ଆମର ସତୀ ପୁଣି ହେଲେ ରାଣୀ, ଜନକ ରାଜର୍ଷିଙ୍କର ଝିଅ ଭଗିରଥ କୁଳର ବଧୂ ମିଛ କଳଙ୍କ କ ସହିପାରେ— ଗଙ୍ଗାରେ ଜୀବନ ଝାସ ଦେଉଥିଲେ —

ବାଲ୍ମୀକ — ଆପଣଙ୍କୁ ମିଛ—ଜଗିଲା ଲୋକ ୧ମ — ଆମେ ଦେଖିବୁ ଆଜ୍ଞା । ଠିକ ମା ଆମର ନନ୍ଦକ ଡେଲିଲ ବେଳକୁ ଆମ ବଣର ଠାକୁରାଣୀ ଧରନେଲେ ତାଙ୍କୁ (ପୁଣି ଉପରୁ କନ୍ଦନବୋଳ ଶୁଣାଗଲା) ତମର ସହରଆଙ୍କର ମିଛ ଅପମାନ ଲାଞ୍ଛନାକୁ ମୁଣ୍ଡନଲିଁ ସହିଛନ୍ତ — ଏଇ ଆମ କୁମାରମାନଙ୍କ ମୁହଁକୁ ଚାହିଁ ।

ବାଲ୍ମୀକ—ସ୍ୱାମୀଙ୍କର ରୂପଧ୍ୟାନ—ଗୁଣଗାନରେ ନିଜକୁ ବଞ୍ଚାଇ ରଖିଛନ୍ତ । ବର୍ତ୍ତମାନ ଅଯୋଧ୍ୟା ରାଜପୁତ୍ର ଶିଶୁଙ୍କର "ମା" ସେ ଜଗିଲା ଲୋକ ।

୧ମ — ଇଚ୍ଛାକଲେ ଜୋରକରି ରାଜ୍ୟର ସିଂହାସନ ନେଇପାରେ "ମା" ଆମର ।

୨ୟ—ହେଲେ ବାପର ପଦସେବା ଛଡ଼ା କଛି ଚାହେଁନା ଆମର ମା ।

ବାଲ୍ମୀକ—ସ୍ୱାମୀଙ୍କର ପ୍ରଜାରଞ୍ଜନ ଧର୍ମରେ ବାଧାଦେଇ ଉଆସକୁ ପଶିବାକୁ ଚାହାନ୍ତ ନାହିଁ ସେ ।

ସୁମନ୍ତ—ଶୁଣିଲେ ସବୁ ମହାରାଜ ! ନିଜର ଅବସ୍ଥାକୁ ଆଉ ରାଜପୁରୀର ଅବସ୍ଥାକୁ ମଧ୍ୟ ଚାହିଁ—ବିଚାର କରନ୍ତୁ କଣ କରାଯିବ ? କେତେକ ମୁଖ୍ୟ ପ୍ରଜାଙ୍କ ମତରେ ମହର୍ଷି ରାଜଲକ୍ଷ୍ମୀଙ୍କୁ ସାଥିରେ ଧରି ଆସିଚନ୍ତି ।

ଲକ୍ଷ୍ମଣ—ଅଗ୍ନି ଆଉ ଜଳଦେବତା—ଯାର ସତୀତ୍ୱକୁ ମଥା ନୁଆଁନ୍ତି ତାର କି ବିଚାର କରୁଚ ଅଯୋଧ୍ୟାର ପ୍ରଜା—ଜାଣିବାକୁ ଚାହାନ୍ତି ସେ ।

ଶ୍ରୀରାମ—( ଇଙ୍ଗିତରେ ମନାକଲେ )

ବଶିଷ୍ଠ—ଆକାଶରେ ସୂର୍ଯ୍ୟ, ତାଙ୍କର ବଂଶଧର, ଆଉ ତାଙ୍କର କୁଳଲକ୍ଷ୍ମୀଙ୍କର କାର୍ଯ୍ୟ ଦେଖୁଛନ୍ତି । ଆଉ ସେଇ ଧର୍ମ ଦେବତା ସଭାରେ ଆସିରେ ବି ଏଇ ପ୍ରଜାଙ୍କ ବିଚାରକୁ ଚାହିଁଚନ୍ତି । ହୃଦ ଆପଣମାନେ, ବିଶ୍ୱାସ କରନ୍ତୁ ଭଗବାନଙ୍କଠାରେ, ଯେ ସବୁ ଦେଖୁଚନ୍ତି, ସବୁ ଶୁଣୁଚନ୍ତି—ପାପ ପୁଣ୍ୟର ସ୍ୱରୂ ଦେଇ ପାରନ୍ତି—ସବୁ କରି ପାରନ୍ତି—ସବୁଠି ଅଛନ୍ତି—ଆପଣଙ୍କ ଭିତରେ ବି ଅଛନ୍ତି—ସେଇ ହୃଦୟ ଦେବତାଙ୍କୁ ପଚାରି କହନ୍ତୁ—ଆଜି ଏଇ ରାଜଦରବାରରେ ସର୍ବସମକ୍ଷରେ ମହାଦେବୀ ତାଙ୍କର ସ୍ୱାମୀ ଅଯୋଧ୍ୟାପତିଙ୍କର ଗ୍ରହଣ ଯୋଗ୍ୟ କି ନା ?

ବାଲ୍ମୀକି—ଏକାଥରେ—ମୁକ୍ତ କଣ୍ଠରେ, ସହସ୍ର ତୁଣ୍ଡରେ ହଁ ହେଲେ ଉଆସକୁ ବିଜେ କରିବେ ରାଜଲକ୍ଷ୍ମୀ, ନଚେତ୍ ତାଙ୍କର ଗତି ସେ ସ୍ଥିର କରିବେ ।

୧ମପ୍ରଜା—ଆଜ୍ଞା, ଗତିକଣ ଠିକକରିବେ । ଦେବତା ଆପଣ—ଆମ କପାଳକୁ ଆସିଚନ୍ତି । ସୁ ରୁଖୁରୁରେ ମା'କୁ ଆମର ଉଆସକୁ ବିଜେ କରାନ୍ତୁ । ପ୍ରଜା ତ ସବୁଦିନେ ଦୋଷୀ । ସତୀଲକ୍ଷ୍ମୀ

ମା' ଆମର, ଉଆସରୁ ଗୋଡ଼ କାଢ଼ିଲାଦିନୁ ରାଇଜଟା ମଶାଣି ପରି ଖାଇ ଗୋଡ଼ଉଚି, ଉଆସର ମହାରାଜାଙ୍କଠୁ ଯେ, ଚାକର ନୌକର ବଳେଇ, କୁକୁର ପର୍ଯ୍ୟନ୍ତ ହତଶିରି ଖାଅନ୍ତା ମଡ଼ାପରି ଦିଶୁଚନ୍ତି—ଏଥକୁ ବଢ଼ିର ସହିବଁ କରନ୍ତୁ ?

ବାଲ୍ମୀକ—ସୁମନ୍ତ୍ର, ଆଜି କାହାର କହ ମତ ?

(ନେପଥ୍ୟେ—ଅନେକ ପ୍ରଜାକଣ୍ଠ) ମା ଉଆସକୁ ବିଜେ କରନ୍ତୁ – ଶୀଘ୍ର ଯାହାର ଆପତ୍ତି ସେ ରାଜ୍ୟଛାଡ଼ି ଚାଲିଯାଉ ।

ସୁମନ୍ତ୍ର – ଶୁଣୁଛନ୍ତି ବଳୁର—

ଶ୍ରୀରାମ—ପ୍ରଜାଙ୍କର ଆପତ୍ତି ନାହିଁ ତ ଭଲ ।

(ସମସ୍ତ ପ୍ରଜା ନେପଥ୍ୟେ) ଜୟ ମହାରାଜାଙ୍କର ଜୟ

ବାଲ୍ମୀକ—(ସ୍ୱଲ୍ପ ସ୍ଥାନରୁ ଯାଇ ସୀତାଙ୍କୁ ଧରି ଆସିଲେ ।

ସୀତା—(ଦେବୀ କାର୍ଣ୍ଣ ଶୀର୍ଣ୍ଣ—ଅସଯତକେଶା ଦୋଇ ଅଧୋବଦନରେ ଠିଆ ହେଲେ)

ବାଲ୍ମୀକ – ବତ୍ସ ତୁମର ମା' ସବ ସମ୍ମୁଖରେ—ମହାରାଜ ଗ୍ରହଣ

(ନେପଥ୍ୟେ ଅନେକ ପ୍ରଜା) ଶୀଘ୍ର ଶୀଘ୍ର ଉଆସକୁ ବିଜେ କରନ୍ତୁ, (କରୁଣସ୍ୱରରେ, ନେପଥ୍ୟେ) ପ୍ରଜାପୁଅ ସବୁଦିନେ ଦୋଷୀ, ରାବଣ ଦର୍ପହାରିଣୀ—ଧର୍ମ ଶିଖାଇବା ପାଇଁ ଦୁନିଆକୁ ଆସିଥିଲ । ତୋର ଏ ହୀନ ବେଶ ଦେଖି ଆଉ ସହି ହେଉନାହିଁ ! (ଭିତରୁ କ୍ରନ୍ଦନ ରୋଳ ଶୁଭାଗଲା) ମହାରାଜ ଗ୍ରହଣ କରନ୍ତୁ ଶୀଘ୍ର ।

ଖଳପ୍ରଜା – ଆମର କିଛି କହିବାକୁ ଅଛି ।

ସୁମନ୍ତ—କଣ, କହନ୍ତୁ ।

ଖଳପ୍ରଜା – ଆଜ୍ଞା – ଆମ ମହାରାଣୀ—ସତ୍ତା – ଶିରୋମଣୀ – ତାଙ୍କ ଚରିତ୍ର ଲୁହରେ ଲଙ୍କା ଜଳଚ – କଅାଁ, ପାଣି ତାଙ୍କଠାରେ ମୁଣ୍ଡ ନଇଁଚନ୍ତି—ଆମେ କାଟି ଦେଉନାହୁଁ । ହେଲେ ଏସବୁ ଶୁଣି – କଚ୍ଛୁ ଅଘଟନ ଘଟନ ମାଙ୍କ ଦ୍ୱାରା ଦେଖିବାକୁ ଆଗ୍ରହ ଆମର ହେଉଚ – ସେମିତି କଚ୍ଛୁ ଦେଖାଇ ପାରଲେ—

ନେପଥ୍ୟେ—ହଁ ହଁ ମେ ବ, ଆହୁର ଲଲ ହୁଅନ୍ତା । ଆଉ ଏ ଯେ ପଛ ଆଡ଼େ ହ୍ନୁରର ଠାପୁର ହେଉଚନ୍ତି ବୋଧ ହୋଇ ଯାନ୍ତେ ।

( ଅନ୍ୟଜଣେ ) – ଆହୁର ଅବିଶ୍ୱାସ ମା'ଙ୍କୁ – ପୋଡ଼ିବରେ ପୋଡ଼ିବ—

ଶ୍ରୀରାମ—ନାଇଁ ନାଇଁ ! ପ୍ରଜା ମନରେ ତଳେମାତ୍ର ସନ୍ଦେହ ଥିବା ପର୍ଯ୍ୟନ୍ତ ଅଯୋଧ୍ୟାର ମହାରାଜା ଗ୍ରହଣ କରିବେ ନାହିଁ ।

ବାଲ୍ମୀକ – ସନ୍ଦେହର ନାଁ ଗନ୍ଧ ଥିଲେ ବ ଜନକନନ୍ଦିନୀ ଜଳାଙ୍କ ସୀମା ଛୁଇଁବେ ନାଇଁ ।

ବଣୁଆଲୋକ—କଣ ରାଜକୁମାର—ଆମର ମା'ଙ୍କୁ ପୁଣି ଅପମାନ ?

କୁଶ – ମା—ଆଦେଶ ଦେ ମା—ନଚେତ୍ ଏ ଧନୁଶର ରହିଲା ତୋର ପାଦତଳେ ।

ଲବ – ହଁ—ମା – (ରାଗରେ ଜଳଉଠିଲେ)

ବାଲ୍ମୀକ—ମହାରାଣୀଙ୍କ ଚରିତ୍ରରେ ଅଘଟନ ଘଟନ – ଏପର୍ଯ୍ୟନ୍ତ ପ୍ରଜାଙ୍କ ଦେଖିବାକୁ ବାକି ଅଛି ?

ବାସନ୍ତ—ବାନର, ଅସୁର ସେନା, ଲଙ୍କା ରାଜା ବିଭୀଷଣ କୁଳ ଦେବ ସୂର୍ଯ୍ୟ ଆଉ ସାରା ପ୍ରକୃତିର ଆଖି—ଆଖି ଦୁହେଁ, କାହୁ ରାଜା ନିଜେ ଆପଣ ଦେଖିଛନ୍ତି ତ ?

ବଣୁଆ ଲୋକ—ତମର ନାମର ବିଶ୍ୱାସରେ ବାନର ବି ଏ ସମୁଦ୍ର—ପାଣିରେ ଭାସେ ପଥର, ତାକୁ ହୁଏ କି ? ବିଶ୍ୱାସ ନାହିଁ ଆଜ ତମେ ରଜା—ଏମାନେ ପ୍ରଜା—ବାପ ପୁଅ, ଏଇ ତ, ଅଯୋଧ୍ୟା ।

ବାସନ୍ତୀ—ପରୀକ୍ଷା ପରେ ପରୀକ୍ଷାର ପ୍ରଶ୍ନ—ସାରା ସମାଜର ଆତ୍ମ-ମର୍ଯ୍ୟାଦା ସାରା ପତ୍ନୀର ଆତ୍ମ ମର୍ଯ୍ୟାଦା ଉପରେ ପଦାଘାତ !

ସୀତା—ସାଧାରଣ ସ୍ତ୍ରୀ ଲୋକଠାରେ କି ପରୀକ୍ଷା ଚାହାଁ ପ୍ରଜା ? କହନ୍ତୁ ପିତା ବାଲ୍ମୀକି, ମାତା କୌଶଲ୍ୟା, ଆଚାର୍ଯ୍ୟ ବଶିଷ୍ଠ, ଆଜ ଅଯୋଧ୍ୟାର ରାଜା—ମୋର ଅନ୍ତରର ଦେବତା—କି ପରୀକ୍ଷାରେ ଆଜ ନଭୂବ ଏ କୁଳର କାଳିମା । ତମର ନାମ ଗୁଣରେ ନିଆଁ, ପାଣି, ପବନ, ତୋଫାନ ପରୀକ୍ଷାରେ ଉତ୍ତୁରିଛି—ସୀତା, କିନ୍ତୁ ଦେଖି ନାହିଁ ପ୍ରଜା—ମା ବସୁନ୍ଧରା କି ପରୀକ୍ଷା ଦେବ ତୋର କନ୍ୟା ? ଜାଣୁ ଯେବେ ସତ ତୋର କନ୍ୟାର ଅନ୍ତର—ସତ୍ୟବ୍ରତ ଧାରୀ ଅଯୋଧ୍ୟାର ରାଜା ରାମଚନ୍ଦ୍ର ପାଦପଦ୍ମ ଛଡ଼ା ସତ ଯେବେ ଅନ୍ୟର କଳ୍ପନା ସ୍ୱପ୍ନରେ, ମଥାର ବିକାରେ ବି ନାହିଁ ସୀତା—ଜନ୍ମ ଜନ୍ମାନ୍ତରେ । ତେବେ, ତେବେ, ଦେ ମା' ତୋର ଶାନ୍ତିମୟ କୋଳରେ ଏ କନ୍ୟାକୁ ଟିକିଏ ସ୍ଥାନ ଦେ—ସୂର୍ଯ୍ୟବଂଶର କଳଙ୍କ ସୀତା ପତ୍ନୀର ମନବେଦନା—ସାରା ନିର୍ଯ୍ୟାତନା—ସବୁ ନିଭା ଦେ—

(ଧୀରେ ଧୀରେ ବସୁନ୍ଧରା ଉଠି କୋଳକୁ ଧରି ନେଉଥିଲେ ଶ୍ରୀରାମଚନ୍ଦ୍ର ଦୌଡ଼ି ଆସି ଅଞ୍ଚଳ ଧରି କହିଲେ)

ଶ୍ରୀରାମ—ସୀତା, ସୀତା—

ଲବକୁଶ—ମା—ମା—(ପଡ଼ିଗଲେ)

ବଶିଷ୍ଠ—ଫେରି ଆ ମା ।

ବାସନ୍ତୀ—କୁଆଡ଼େ ଯାଉଛୁ ଭଉଣୀ (ପଡ଼ିଗଲେ) (କାନ୍ଦି ଉଠିଲେ ଭରତ, ଶତ୍ରୁଘ୍ନ) ।

(ଭିତରୁ କାନ୍ଦଣା ଶୁଭିଲା)

କୌଶଲ୍ୟା—ମା--ମା--ଏ ବୁଢ଼ୀଟାକୁ ସାଙ୍ଗରେ ନେ ମା--

ଲକ୍ଷ୍ମଣ--ହୀନ ପ୍ରଜା କଣ କଲ ? (କାନ୍ଦୁଥିଲେ)

ଶ୍ରୀରାମଚନ୍ଦ୍ର--ସୀତା--ସୀତା ମୋତେ ନେଇ ଯା--ସୀତା-(ଟାଣୁଥିଲେ ଅଞ୍ଚଳ) ଭିତରୁ କ୍ରନ୍ଦନ ଓ ସଭାରେ କ୍ରନ୍ଦନ ମଧ୍ୟରେ

ପତନ—

ମା

ସ ପ୍ତ